ତୋ ନାମ ଗାଇ ତୁଣ୍ଡରେ
ପ୍ରୀତି–ନାଗର୍ ବଜାଇ ଦାଣ୍ଡରେ
ଭିକ୍ଷା ମାଗୁଛି ମୁଁ ବ୍ରହ୍ମାଣ୍ଡରେ, ସଜନୀ ଗୋ

Literature has saved my life and my reason. Even now I dare not in the intervals of business remain alone without a book—Macaulay's confession on the death of his sister.

There are moments in life when the transient and sadness of existence are made bearable only by their poetry—F. L. Lucas.

# ଏରି ରେମାର୍କ

ଲେଖକ :—
ଶ୍ରୀ ବସନ୍ତକୁମାର ଶତପଥୀ ଏମ୍: ଏ
ଅଧ୍ୟାପକ ଫକୀରମୋହନ କଲେଜ, ବାଲେଶ୍ୱର

ପ୍ରକାଶକ—
ମଡର୍ଣ୍ଣ ବୁକ୍ ଷ୍ଟୋର
ବାଲୁବଜାର, କଟକ—୨

ପ୍ରଥମ ପ୍ରକାଶ—
୧୯୬୭

ମୂଲ୍ୟ
ବଣାଇ ସବ୍ଧ ଟଙ୍କା ପଚସ୍ତରୀ ପଇସା

ମୁଦ୍ରାକର—
ମଡର୍ଣ୍ଣ ପ୍ରିଣ୍ଟର୍ସ
ପିଠେନ୍ ସାହି, କଟକ—୧

# ଶୁଆ ନଳ ଭୁଣ୍ଡରେ କହିବ

"ଶୁଆ ମୁହଁ ଶୁଆ ନଳ ଭୁଣ୍ଡରେ କହିବ" କଥାଟି ଆମ ଦେଶରେ ଏକ ପ୍ରବଚନ ରୂପେ ପ୍ରଚଳିତ । ଏହି କଥାଟିର ଜନ୍ମ [illegible] ଭୋର ଗର୍ଭରୁ । କେବଳ ଶୁଆପକ୍ଷୀ ନୁହେଁ, କାହାଣୀ କଳାପ୍ରକୃତି ସେଥିରେ ଏଥିପାଇଁ ପ୍ରଯୋଜ୍ୟ ସମସ୍ତ କଳା ସୃଷ୍ଟିପ୍ରତି ଏହାର ତାତ୍ପର୍ଯ୍ୟ ସେହିପରି ସମ ଭାବରେ ପରିମାପର ଏକ କଷଟି । ସୃଷ୍ଟିର ମୂଲ୍ୟବୋଧ ଓ ଗୌରବ ତା'ର ଅଭିବ୍ୟକ୍ତିର ଅନ୍ତରାଳରେ ନିହିତ । ସେହି ମୂଲ୍ୟବୋଧ ଓ ଗୌରବର ପରିଚୟ ଲାଭ କରେ ଯଥାର୍ଥ ଉଦ୍‌ବୋଧ ଓ ସହୃଦୟ ଗ୍ରାହକମନ
ମୋର ବନ୍ଧୁ ଅଧ୍ୟାପକ ଶ୍ରୀ ଶଚୀପତିଙ୍କର କେତେ ଗୁଡ଼ିଏ ଗଳ୍ପର ସଙ୍କଳନ ‘ଏକି ଭ୍ରମାଣିକ’ ନାମରେ ପ୍ରକାଶିତ ହେବାକୁ ଯାଉଛି । ବନ୍ଧୁବର ଚାହାନ୍ତି, ପାଠକମାନଙ୍କ ପାଇଁ ଏହି ପୁସ୍ତକଟିର ଗୋଟିଏ ଭୂମି ତୋରଣ ଟିଏ ମୁଁ ନିର୍ମାଣ କରିଦିଏ । ବନ୍ଧୁବରର ଅନୁରୋଧ ଏଡ଼ିବା ଯେ କୌଣସି ବନ୍ଧୁ ପକ୍ଷରେ ଦୁଃସାଧ୍ୟ । ବିଶେଷତଃ ବସନ୍ତବାବୁ ସ୍ରଷ୍ଟା ଏବଂ ବୟସରେ ପୁଣି ମୋଠୁଁ ବୟୋଜ୍ୟେଷ୍ଠ । ମାତ୍ର ବନ୍ଧୁତ୍ୱ [illegible] ଆମ୍ଭ ସମ୍ପଦ ଯାହା [illegible]ସର ବ୍ୟବଧାନ ବା ସୀମାରେଖାକୁ ଅସ୍ୱୀକାର କରିଥାଏ ଏବଂ [illegible]ସ କ୍ଷେତ୍ରରେ ତାହାହିଁ ଘଟିଛି ମଧ୍ୟ । ତେଣୁ ତାଙ୍କର ପ୍ରସ୍ତାବ ଓ ଅନୁରୋଧରେ ମୁଁ ସମ୍ମତ ହେଲି । ସମ୍ମତ ହେବାର ଅନ୍ୟ ଏକ କାରଣ [illegible]ଛି ପ୍ରକାଶୋନ୍ମୁଖୀ ଗ୍ରନ୍ଥର ସମସ୍ତ ଗଳ୍ପ ଆମ୍ଭର ବାଲେଶ୍ୱରରେ ଅମର [illegible]ଷ ଅବସ୍ଥାନ କାଳରେ ଲିଖିତ । ତେଣୁ ଏହାର ପୂର୍ବରୁ ବଧୂଦର୍ଶନ [illegible] ଗଳ୍ପ ଗୁଡ଼ିକର ପ୍ରକାଶ ପୂର୍ବରୁ କେବଳ ଦର୍ଶନ ନୁହେଁ, ସେ [illegible]ସ୍ପର୍ଶନ ଓ ଉପଭୋଗର ସୌଭାଗ୍ୟ ମଧ୍ୟ ମୁଁ ପାଇଛି । ତଥାପି [illegible]ଗୁଡ଼ିକର ଅନ୍ତର୍ନିହିତ ଉପଚେତନା, ଜୀବନ ବୋଧ ଓ କଳାମୂଲ୍ୟ

ସମ୍ପର୍କରେ ମୁଁ ବିଶେଷ କିଛି କହିବି ନାହିଁ । ପ୍ରତ୍ୟେକ ପାଠକ ନିଜର ରୁଚିର ଶୀଳତା, ସହୃଦୟତା, ଓ ହୃଦୟବତ୍ତା ଦୃଷ୍ଟିରୁ ସେ ଗୁଡ଼ିକର ମୂଲ୍ୟ ନିର୍ଦ୍ଧାରଣ କରିବେ । ମୁଁ କେବଳ ବସନ୍ତବାବୁଙ୍କ ଜୀବନ ଓ ସାଧନା ସମ୍ପର୍କରେ ଯେତିକି ଜାଣେ ସେତିକି କହିବି ।

ବସନ୍ତବାବୁଙ୍କ ସହିତ ମୋର ବ୍ୟକ୍ତିଗତ ସମ୍ପର୍କ ସ୍ଥାପିତ ହେବା ପୂର୍ବରୁ (୧୯୬୨) ମୁଁ ତାଙ୍କ ସହିତ ସାହିତ୍ୟ ଜଗତ ମାଧ୍ୟମରେ ପରିଚିତ ହୋଇସାରିଥିଲି । ସେତେବେଳେ ସମ୍ଭବତଃ ହୋଇଥିବ ତାଙ୍କର ସମୀକ୍ଷାମୂଳକ କେତୋଟି ପ୍ରବନ୍ଧ ସାପ୍ତାହିକରେ ... ତାଙ୍କର ... ଦୁଇଟି ପଢ଼ିଥିଲି । * 'ଉତ୍କଳପ୍ରସଙ୍ଗ'ରେ ପଢ଼ିବାର ସୁଯୋଗ ମୁଁ ପାଇଥିଲି ତା' ମଧ୍ୟରୁ ତାଙ୍କର 'ଫକୀର ମୋହନ ସେନାପତି' ଶୀର୍ଷକ ସମୀକ୍ଷାଟି ମୋତେ ଆକୃଷ୍ଟ କରିଥିଲା । ଏହି ଆଲୋଚନାଟିର ଅନ୍ତର୍ନିହିତ ରସ, ଚେତନା, ଆବେଗ ଓ ଅନ୍ୱେଷଣୀ ପ୍ରତିଭା ଫକୀର ମୋହନ ପ୍ରତିଭା ସମ୍ବନ୍ଧୀୟ ବହୁ ପୂର୍ବତନ ପ୍ରବନ୍ଧ ମଧ୍ୟରେ ଏକ ଉଲ୍ଲେଖଯୋଗ୍ୟ ସ୍ଥାନର ଅଧିକାରୀ (ଦୁର୍ଭାଗ୍ୟ ବଶତଃ ତା'ର ପ୍ରତି ... ) ... ପ୍ରକାଶିତ ... । ୧୯୫୬ ଓ ୧୯୬୧ ... 'ଉତ୍କଳ ପ୍ରସଙ୍ଗ'ରେ ପ୍ରକାଶିତ ତାଙ୍କର 'ଜଳଦ୍'ଓ' 'ସାଧକ କବି' ଓ 'ସ୍ୱର୍ଣ୍ଣରେଣୁ' ଶୀର୍ଷକ କେତୋଟି ରଚନା । ଆଲୋଚନା ମଧ୍ୟ ଏହି 'ଉତ୍କଳ ପ୍ରସଙ୍ଗ'ରେ ପ୍ରକାଶିତ । ତାଙ୍କର ସମାଲୋଚନା ପଢ଼ି ମୁଁ ଅନୁଭବ କରିଥିଲି ସେ ଜଣେ ନିଷ୍ଠାପର ସ୍ପଷ୍ଟବାଦୀ ଓ ରସଜ୍ଞ ହୋଇଥିବେ । ବ୍ୟକ୍ତି ସମ୍ପର୍କରେ ଅଧିକା ଜାଣିବା ମୋର ଏ ପ୍ରାଥମିକ ଧାରଣା ବଦ୍ଧମୂଳ ହୋଇଛି ଦିନୁ ଦିନ ।

---

* ପ୍ରାଚୀନ ଉତ୍କଳ ପତ୍ରିକା ମଧ୍ୟରେ ମୟୂରଭଞ୍ଜରୁ ପ୍ରକାଶିତ 'ଉତ୍କଳପ୍ରସଙ୍ଗ' ସେମାନଙ୍କର ଏକ ସମ୍ମାନଜନକ ଆସନର ଅଧିକାରୀ, ସମକାଳୀନ ବହୁ ମୃତ ଓ ଜୀବନ୍ତ ପତ୍ରିକା ମଧ୍ୟରେ 'ଉତ୍କଳପ୍ରସଙ୍ଗ' ରୂପ ଓ ଗୁଣ ଦୃଷ୍ଟିରୁ ନିଶ୍ଚିତ ଏକ ବରେଣ୍ୟ ସ୍ଥାନର ଅଧିକାରୀ । ଏହି ପତ୍ରିକାର ସମ୍ପାଦକ—ଲକ୍ଷ୍ମୀନାରାୟଣ ସାହୁ ଏ ଯୋଗ୍ୟ ଯଥାଯୋଗ୍ୟ ସ୍ମୃତି-ସମ୍ମାନ ଦେଇ ନାହାନ୍ତି । ଶ୍ରୀଯୁକ୍ତ ତ୍ରିପାଠୀ ପ୍ରାୟ ୧୬ ବର୍ଷ କାଳ ଏହି ପତ୍ରିକାର ସମ୍ପାଦନା ଦାୟିତ୍ୱରେ ମଧ୍ୟ ରହିଥିଲେ ।

# କାଣୀଚିଆଁ

କବାଟରେ ଭଙ୍ଗି ରହି ଖଣ୍ଡ ଖଣ୍ଡ ହେ ଶୁଣିଥିଲୁ ନ ନାହିଁ, ଝୁନୁ ଘରଭିତରୁ ଧାଇଁ ଧାଇଁ ହୋଇ ବାହାରି ଆସି ଛୁଟିଗଲିଥା ପିଠାଉ ପିଠାଉ ଭାଗ ଭାଗ ହୋଇ କହିଲା, "ଶୀଘ୍ର ଆସ, ବାପା, କାଣୀ ଆଉ ନାହିଁ।"

"ମରିଗଲା ?" ଆମର ଝିଅର ଛୋଟ ଅଭିଜ୍ଞତାର ଧାରା ଅନୁସାରେ 'ଆଉ ନାହିଁ' 'ଆଉ ନାହାନ୍ତି'ର ଅର୍ଥ ଏହାହିଁ।

"ନା, ନା, ବାପା, ଚିଲ ନେଇଗଲା।" ଅଶ୍ରୁରୁ ଲୁହଧାର ସ୍ୱରରେ ପୁଣି କହିଲା, "ବୁଲୁଥିଲା ସେ ଖାଲି ବୁଣି ଦେଇଥିଲି ଟୋକେଇରେ, ତାକୁ ଖାଉଥିଲା।"

କହୁଣେଇଗଲା ଶୋଭାଡ଼ ଦେଇ ବାହାରି ଗଲି ଅଗଣାକୁ, ଉପରକୁ ଅନାଇ ଦେଖିଲି—ପ୍ରାୟ ତାଳେ ଉଚ୍ଚରେ ଚିଲଟା ପୂର୍ବମୁହାଁ ହୋଇ ଉଡ଼ି ଯାଉଛି। ସେଠିକେ କଳା କଳା ଗୋଡ଼ ଭିତରେ ଗ୍ଲେଟ ଟେନିସ୍ ବଲ୍ ପରି ଧଳା ଜନ୍ତୁଟିଏ ଝୁଲୁଛି। ଟ୍ରେନ୍ ସ୍ପେନ୍‌ର ବହୁତ ଦୂରରୁ ଶୁଭିଲା ଶବ୍ଦ ଅସେ ଚିଁ ଚିଁ ଶବ୍ଦଟା ଚଳର ଟୋନକ ଝଡ଼ରୁ ଆସୁଛି। ଝଳକ ହୋଇ ଚଉଁଠି ପିଟିକି ଡାକୁଛି, "ନା, ବାପା, ରକ୍ଷ", "ହରି, ତ୍ରାହି, ରକ୍ଷ" "କୁନୁ, ଝୁନୁ, ରକ୍ଷ"। ଦୂରରୁ ଏକେବେଳେ ଆଉ ଗୋଟାଏ ଚଳର ଲମ୍ବା ଚେଞ୍ଚାର ଶୁଭିଲା, ପିଟିକି ଛିଣ୍ଡା କହୁଛି, "ନା, ନା, ଛାଡ଼ିବୁ ନାହିଁ, ଜୀବନସ୍ପୃହାର ଦୁର୍ବଳ।" ଚଉଁର କରୁଣ ଆର୍ତ୍ତନାଦ

ଚଳନ୍ତାର ବ ଗ୍ଲୁଡ ଚରନ୍ତଙ୍କ ଦେଖାକୁ ପାଉଥିଲା । ଜୋଂପଡୁଏ ଯେଉଁଥିପାଇଁ ସେଇ କରୁଣ ଡାକ ବନ୍ଦ କରିଦେବା ଉଦ୍ଦେଶ୍ୟରେ ଚଳନ୍ତା ତା' ମୁହଁକୁ ଚଳ ଆଡକୁ ବଙ୍କାଇ ଆଣି ଧଳା ଜବନ୍ତା ଆଡକୁ ବଢ଼ାଇ ଦେଲା । କ୍ଷୀଣରୁ କ୍ଷୀଣତର ହୋଇ ଶବ୍ଦ କ୍ରମେ ବନ୍ଦ ହୋଇଗଲେ । ମହାକାଶ ଘନଘନ ହୋଇଗଲା । ଖୁବ୍ ଉଚ୍ଚ ଶିମୁଳି ଗଛର ଅଗରେ ଥିବା ଫାଟା ଶିମୁଳ ଫଳରୁ ଦମକା ପବନରେ ଯିମିତି ଗୋଛା ଗୋଛା ତୁଳା ଉଡି ଯାଏ ସେମିତି ଗ୍ରେଟ ଗ୍ରେଟ ଗରେ ବେଷଣି ଆକାଶରେ ଖେଳଗଲା । ଚଳର ପିଠି ଉପରେ ବସିବାର ଚେଷ୍ଟା କରି କୁଆଟିଏ ଚଳକୁ ଦଉଗୁଣ ବିରକ୍ତ କଲେ ସିନା, ଫଳ କିଛି ପାଇଲା ନାହିଁ । ଦେଖୁଁ ଦେଖୁଁ ଚଳ ଅଦୂରର 'ବଗୀଚ ଶାଳର୍କୀ ଚରୁ' ନିକଟରେ ପହଞ୍ଚିଗଲା । ବାହ୍ନିନା ଓ ବାର-ସିଙ୍ଗା ନିଗଣ କୋଳାହଳ କରି ଜଣାଇଲେ ରଜପୁତ୍ର ଘରକୁ ସମ୍ବର୍ଦ୍ଧନା । କୁଆଟି ନିରାଶ ହୋଇ ଫେରି ଆସିଲା । କେବଳ ଧଳା ପରଟିଏ ଧୀରେ ଧୀରେ ପବନରେ ଭାସି ଭାସି ଆସି ଲଟିଲା ଅଗଣାର ସଜ୍ନେଗଛର ଅଗ ଡାଳରେ ।

ଆଲେକ୍ଜାଣ୍ଡାର ମରିଯିବା ପରେ କୁକୁଡା ରଖିବା ସଉକ ମୋର ବୁଲି ଯାଇଥିଲା । ଏକ ହାତରେ ଉତ୍ସାହ ହେଲେନ୍ ଅନ୍ୟ ହାତରେ ଚନ୍ଦନ ମନୋହରଙ୍କୁ ଧରି ସ୍ୱରରେ ମୁଁ ତ ହୋଇ ବେକକୁ ଲମ୍ବାଇ ଆଲେକ୍ଜାଣ୍ଡାର ଯେତେବେଳେ କେତେବେଳେ ଡାକ ଛାଡୁଥିଲା ସେତେବେଳେ ପୂଜାରୀ ହେଉଥିଲା ପାଖର ଶିବମନ୍ଦିରର ହରିଗୌଡ଼ଙ୍କୁ କହୁଥିଲେ, "ଗୌଡ଼, ମନ୍ଦିରଟା ଫାଟିଗଲା ନା କ'ଣ ? ଏଠି ଆଜି ରହି ହବ ନାହିଁ ।" ମହାଦେବ କ୍ରୋଧରେ ହିଁ ହିଁ ଭିଜି ଗୁଡରେ ତା'ର ବଧ କରିଦେଲେ ବୋଧହୁଏ । ଜ୍ଞେଣାଚଳର ଯାଆ ଷଠେ ମାଦ୍ରକ ହେଲ ଓ ମାସକ ଭିତରେ ଆଲେକ୍ଜାଣ୍ଡାର ସ୍ୱର୍ଗଦ୍ୱାରରେ ବିଶ୍ରାମ ନେଲା । ସଦ୍ୟବିଧବା ହେଲେନ ଓ ମନୋହର ଜଣକୁ ମୋଳିଆ ପାଖର ଜନୈକ ଦେଶୀ ସାହେବ ପଛରେ ଚନା ଯୌତୁକରେ ଦାନ କରିଦେଲି ।

ତା'ପରେ ଆସିଲା ବଦଳ ହୁକୁମ ୧ ଛାଡ ବନ୍ଧୁ କୁଟୁମ୍ବ ତଥା ଜନ୍ମସ୍ଥାନରୁ ଦୂରେଇ ଆସି ପାରଳାର ନୂଆ ପରିସ୍ଥିତି ଓ ପରିବେଶ ସହିତ ମେଳ ରଖି ଚଳିବାର ଚେଷ୍ଟା କରୁଥାଏ ।

ଦିନେ ଏଇ ଶନିବାର ସନ୍ଧ୍ୟାରେ ବନ୍ଧୁ କୁଳମଣି ଆସି ପହଞ୍ଚିଲେ ଆମ ବସାରେ । ବେତବୁଡ଼ି ଭିତରୁ ପାଞ୍ଚୋଟି ଲେଗହର୍ଣ୍ଣ ଛୁଆ ବାହାର କରିଲେ, "ଏଇ ନିଅନ୍ତୁ, ଆପଣଙ୍କ ପାଇଁ ମୋର ଉପହାର । ପଶୁ ଡାକ୍ତର-ଖାନାରୁ ଆଣିଛି । ଏଠି କାଳ କାଟିବାକୁ ଚାହିଁଲେ ବଗିଚା କରନ୍ତୁ, କୁକୁଡ଼ା ପାଳନ୍ତୁ, ନ ହେଲେ ସମୟର ବୋଝ ସମ୍ଭାଳି ପାରିବେ ନାହିଁ ।" କୁନୁ, ଝୁନୁ, ମୁନୁ ସମସ୍ତେ ଡେଇଁ ଉଠିଲେ କହିଲେ, "ହଁ ହଁ ବାପା, କୁକୁଡ଼ା ପାଳିବା ।" ଜୀଅନ୍ତା ଖେଳନା ସ୍ୱଭାବରେ କୁକୁଡ଼ା ଛୁଆଗୁଡ଼ାକ ଦାମିକା ଖେଳନା ମଟର, ରେଲ, ଜାହାଜଠାରୁ ଭଲ ଲାଗି ହିଁ ରହିଲ । ସେ ଦିନ ରାତି ବହୁତ ଡେରିରେ ପିଲାମାନେ ଶୋଇଲେ ।

ତହିଁ ଆରଦିନ ଆସିଲା ବାଉଁଶ ଟୁଡ଼ି, ମାଟିଆ, ବାଜରା, ଗହମ, ଶୁଖୁଆ ଆଦିର କେତେ କ'ଣ । ଅଗଣାର ଗୋଟିଏ କଣରେ ଲଗା ହେଲା ଦୁବଘାସ । ବଡ଼ ହେଲେ କୁକୁଡ଼ାଗୁଡ଼ାକ ସବୁଜ କଅଁଳ ଖାଇବାକୁ ପାଇବେ । ପିଲାମାନଙ୍କର ଭୋକଶୋଷ ନାହିଁ । ସବୁବେଳେ ଛୁଆଗୁଡ଼ାକୁ ଘେରି ରହିଛନ୍ତି, କିଏ ଖୁଦକଣ୍ଡା ବୁଣୁଛି, ଆଉ କିଏ ପାଣି ଆଣି ମାଟିସରା ପୂରଉଛି । ପାଞ୍ଚ ଛଅ ଦିନର ଛୁଆଗୁଡ଼ିକ ତଥାପି କେତେ ସ୍ୱାଧୀନ, ଖେଳୁଆଡ଼ ଓ ଚଞ୍ଚଳ । ଛୁଆଟିଏ ବା ବାଛୁରିଟିଏ ପାଞ୍ଚ ଦିନରେ ଯେଉଁ ଅବସ୍ଥାକୁ ଆସନ୍ତି ମଣିଷଛୁଆ ପାଞ୍ଚବର୍ଷରେ ସେ ଅବସ୍ଥାକୁ ଆସନ୍ତି ନାହିଁ । କେତେ ଅସହାୟ ଦୁର୍ବଳ ମଣିଷଛୁଆଗୁଡ଼ାକ ! ସେଥିପାଇଁ ଏତେ ବାରବ୍ରତ, ପୂଜାଜପ ସିନା ।

ଦିନେ ଦି'ଦିନ ଗଲା । ସ୍କୁଲ ଫିଟିଲା । ପିଲାଙ୍କ ଅଜସ୍ର ଉତ୍ସାହ କ୍ରମେ ମଉଳି ଗଲା । ଝୁନୁ ସ୍କୁଲ ଯାଏ ନାହିଁ ତେଣୁ ସେ ଏ ଛୁଆଗୁଡ଼ିକ କଥା ବୁଝେ । କେତେବେଳେ କମିଚ ଡାକୁଣି ଖୋଲିଦିଏ ଓ ବାଡ଼ିଟିଏ ଧରି ଜଗି ବସେ । ଦିନେ ଖୋଲୁ ଖୋଲୁ ଡାକୁଣିଟା ଗୋଟିଏ ଉପରେ ମାଡ଼ି ହୋଇଗଲା । ଛୁଆଟିର ଗୋଡ଼ ଦଳି ମକଚି ହୋଇ ଲେଙ୍ଗଡ଼ା ହୋଇଗଲା । ତହିଁ ଆରଦିନ ଗୋଟାକୁ ଚିଲ ନେଇଗଲା । ତାପରଦିନ ଆଉ ଗୋଟାଏ । ମୁଁ ଫେରିଲେ ଆଖି ଛଳ ଛଳ କରି ଝୁନୁ ତା ଦୁନିଆଁର ଶୋକସମ୍ବାଦ ଦିଏ । ଅଳ୍ପ ଅଳ୍ପ ଦେଉଥିବା ମା'ର ଚେଷ୍ଟା ନ

ଯୋଗାଇବ କୁଆଡୁ ? କ୍ରମେ କ୍ରମେ ସଂଖ୍ୟା କମି କମି ରହିଲା ଏକରେ ଓ ସେଇ ଏକ ହେଲା ଶ୍ରେଷ୍ଠା । ସ୍ୱାମୀକର୍ଣ୍ଣଙ୍କୁ ହଠାତ୍ କୁଆଡୁ ଆକ୍ରମଣ କଲା । ନେଇ ପାରିଲା ନାହିଁ ଚନ୍ଦ୍ରୁ ପାଖରୁ; କିନ୍ତୁ ଆଣି ଗୋଟିଏ ଛୁରି ପୂରାଇ ଦେଲା । ଶ୍ରେଷ୍ଠାର ନାଁ ହେଲା କାଣୀ । କାଣୀକୁ ଚନ୍ଦ୍ରୁ ଝୁଡ଼ି ଭିତରୁ ପଦାକୁ ଆସିବାକୁ ଦିଏ ନା; କିନ୍ତୁ ଆଜି ପ୍ରୀତି ଭୁଲି କରି ବସିଲା ଓ ଗୁରୁ ଭଉଣୀଙ୍କ ପଥ ଅନୁସରଣ କରି ସ୍ୱର୍ଗମାର୍ଗରେ ଏକମାତ୍ର କାଣୀ ମହାପ୍ରୟାଣ କଲା । ଶ୍ରେଷ୍ଠା ଓ କଣା ହେଲେ ବି ସମସ୍ତଙ୍କ ବାଣ୍ଡେଚଃ ଚନ୍ଦ୍ରୁର ଆଦର-ଯତ୍ନ ପାଇ କରି ସୁନ୍ଦରିଆ ଦିଶୁଥିଲା ।

ଅଗଣାର ଗୋଟିଏ କଣକୁ ପାଇ ଚନ୍ଦ୍ରୁ କହୁଥିଲା, 'ବାପା', ଏଇଠି ଅଧ ଘଣ୍ଟା ମାରିଲା ଚନ୍ଦ୍ରା, କାଣୀ କାନ୍ଥ ପାଖରେ ରହୁଥିଲା, ପାରିଲା ନାହିଁ,' ପିତ୍ତାର ଠିକ୍ ତଳକୁ ଝୁଡ଼ିପାଖ ସ୍ଥାନଟାକୁ ଦେଖାଇ କହିଲା, "ଏଇଠି ନେଇଥିଲା ... ମୁଁ ଦାଉ ହାତ କରି, ଶୁଣିଲା ନାହିଁ ।" ଏକା କଥା ସେ କହୁ କହୁ କାନ୍ଦୁଥିଲା; ଭାବିଲେ ବୋଧ ହେବ ସ୍ୱର ନ ପାରି ଖୋଲି କହିଲା, "ଆଉ ଆସିବ; ଯାଉନା" ତା'ପରେ ବୁଲିଗଲା ଘର ଭିତରକୁ ।

ସେଦିନ ବାରଟାଏ ଠାଣି ଆସି ବସିବ ବରଣ୍ଡାର ଗୋଟିଏ କଣକୁ । ଅଛି ଦଳ ଉଦାଳିଆ ଲାଗୁଥାଏ । ତଳେ ମଶିଣାରେ ବସିଥାଏ ଚନ୍ଦ୍ରୁ ଚୁପ୍‌ଚାପ୍ ହୋଇ । ମୁଁ ଖବୁଥାଏ, ମୋ ଚିଲପିଲ ଯେଉଁ କାଣୀକୁ ଦେଖି ନେଇଥିଲା ସେଇ କାଣୀ ଉପରେ ଆହାର, ଶାବକ ଦେଉଥିବ ଚିଲ ଛୁଆଙ୍କୁ । ହଠାତ୍ ଚନ୍ଦ୍ରୁ ଆଙ୍ଗୁଳି ବଢାଇ ଚିତ୍କାର କଲା, "ବାପା, ସେଇ ଗଛର ଅଗରେ ଯେଉଁ ବସା ସେଇଠି ଚିଲମାନେ ଆମ କାଣୀକୁ ରଖିଛନ୍ତି । ଯାଅ, ଚିଲକୁ ମାରି କାଣୀକୁ ନେଇ ଆସ ।"

ବୁଝିଲି ଦୁଇଶ' ଗଜ ଦୂରର ଶିମୁଳି ଗଛଟାକୁ । ମାତ୍ର କେତେ ଦିନ ପୂର୍ବରୁ ସେଇଠି ବସି ଦେଖୁଥିଲି ଚିଲ ଦିଟା ଖଣ୍ଡି ଖଣ୍ଡି କାଠି ଆଣି କିପରି ଚମତ୍କାର ନିର୍ମାଣକୌଶଳ ଦେଖାଉଥିଲେ । ମହାରାଜାଙ୍କ ପ୍ରାସାଦରୁ ବଣ ବାଘ ପୂରା ବେଶୀ ଉଚ୍ଚରେ ସେମାନଙ୍କ ଅଟ୍ଟାଳୀ ପ୍ରାସାଦ । କେତେ

ନିସ୍ତେଜ ପଡ଼ିଛନ୍ତି ସେ ପ୍ଲାଷ୍ଟିକ୍ ଫୁଲମାନେ । ବନ୍ଧୁ କିଏ ମିଳନ୍ତା କି ଦେଖାଇ ଦଅନ୍ତା । କେତେ ଅନ୍ଧେଭୁକ୍ତ ସେମାନଙ୍କ ଅସ୍ପୃଶ୍ୟ ଓ ଲାଞ୍ଛନା । ଗୁଡ଼ମାଡ଼ ଗୋଟା ଗୋଟା ଖୁଆଇ ଦଅନ୍ତା ତାଙ୍କ ବଂଶଧର । ନ ହେଲେ ବାଙ୍ଗାଳିର ଗୁଣକୁ ନେଇକ ବାବୁଭୁଧର ଲମ୍ବା ଲମ୍ବା ବାହିଁଶନଳୀ ଯୋଡ଼ ଖ ଅଁ ଖ କରି ତାଙ୍କ ବସା ଭାଙ୍ଗି ଦଅନ୍ତା; କିନ୍ତୁ ବନ୍ଧୁ ବା କାହିଁ ! ବାଙ୍ଗାଳିର ବଂଶ ବା କାହାନ୍ତି ? ବନ୍ଧୁ ଥିଲେ ବି ଲାଭ କ'ଣ ? କାଳୀ ପୂଜାରେ ତ ବାଣଟାଏ ବି ଫୁଟାଇ ନାହିଁ କେବେ ଉତ୍ସବରେ । ସେତିକି ଲାଗୁଛି ମୋର ନପୁଂସକ କ୍ରୋଧ ସେତିକି ବଢ଼ି ଚାଲିଛି । ନୂଆ ଅନ୍ଧକାରର ଗାମ୍ଭୀର୍ଯ୍ୟ ସେତିକି ଇନ୍ଧନ ଯୋଗାଉଛି ସେ ବହ୍ନିକୁ । ପ୍ରତି ଥରେ ବେଶୀ ବେଶୀ ଧକ୍ଧକ୍ ହେଲାଣି । କ'ଣ କରିବି, କ'ଣ କରନ୍ତି, କ'ଣ କଲେ ମନଟା ଟିକିଏ ଶାନ୍ତ ହୁଅନ୍ତା ଏଇ କଥା ଭାବୁଛି ହଠାତ୍ ମନେ ପଡ଼ିଲା ତାର ଛିନ୍ନ ମଣ୍ଡଳ କଥା ।

ଛିନ୍ନମଣ୍ଡଳ ? ହିଁ, ହିଁ, ଛିନ୍ନବାସ ମଣ୍ଡଳ । କେତେ ଘାତ, କେତେ ସ୍ୱାର୍ଥପରୀ, କେତେ ଶୋଷଣ ସେ ଚୋବାଟା, କେତେ କ୍ଷୁଧାର ତା'ର ପ୍ରତିଶୋଧ, କେତେ ଚମତ୍କାର ତା'ର ପ୍ରତିହିଂସା ।

ଚଉଦ ପନ୍ଦର ବର୍ଷର ଚାଉଡ଼ା ଟୋକାଟିଏ । ବାପ ତାକୁ ଘରୁ ବାହାର କରି ଦେଇଛି । କେତେ ଦିନ ଆଗରୁ ଲଙ୍କା, ଲୁଣ, ଧନିଆ ଶାଗ ପିଆଜର ପସରାଟିଏ ଦୋକାନଟିଏ କାଢ଼ିରେ ବୋଝ ଗାଁ ଗାଁ ବୁଲି ଦିନ କିଛି କେତେ ପଇସା ରୋଜଗାର କରୁଥିଲା । ସେଇ ମଧ୍ୟରେ ଗୁରୁବାରକୁ ଗୁରୁବାର ବାରିପଦାରୁ ପାନ ବୋଝଟିଏ ଆଣି ଗାଁ ଗାଁ ବିକ ଯୋଗାଉଥିଲା । ମାତ୍ର ନେଇଥିବା ପାରିଲା ନାହିଁ ବୋଲି ତା ବାପ କ୍ରୁଦ୍ଧ ହୋଇ ତାକୁ ଘରୁ ବାହାର କରି ଦେଇଛି । ବାପ ପୁଅର ମୋଟେ ପଟେ ନାହିଁ, ମୁହଁ ଦେଖାଦେଖି ବି ନାହିଁ ।

ଏମିତି ସେ ଦିନଟା । କୁହେଁଳିଆ କୁହେଁଳି ଝର । ଶିମୁଳି ଗଛରେ କଡ଼ ଆସି ନ ଥାଏ । ପୋଷ୍ଟସ୍ୱହ୍ମଶାଖ ଲଙ୍ଗଳା ଡାଳଗୁଡ଼ାକ ଲମ୍ବା ଲମ୍ବା ଅଙ୍ଗୁଳି ପରି ହାତ ଯୋଡ଼ି ମେଲାଇ ଛିଡ଼ା ହୋଇଥାନ୍ତି । ଉଦ୍ଧୃତ

ବଡଦଣ୍ଡର ପୁରୁଣା ପୋଖରୀରେ ଜାଲ ପଡ଼ୁଛି; ପଦ୍ମ ମିଶ୍ର, ହରି ନନ୍ଦ, କୈଳାସ ଷଡ଼ଙ୍ଗୀ, ପୂର୍ଣ୍ଣ ଶତପଥୀ ଆଦି ମଝିଆଳଦାରମାନେ ଆଉ ଗାଁର ଅନ୍ୟାନ୍ୟ ଲୋକ ପୋଖରୀ ହୁଡ଼ାରେ ରୁଣ୍ଡ ହୋଇଛନ୍ତି । ପୋଖରୀମଝିରେ ମଛ ଯେତେ—ଲୋକ ତା'ଠାରୁ ବେଶୀ । କାଦୁଅ ପାଣି ଏକାକାର । ଗ୍ରେଟ ଗ୍ରେଟ ମାଛଗୁଡ଼ାକ ଘାରି ଝଟିଲେଣି । ଚଲ କୁଆ କେତେବେଳେ ଡମିଆ ଗୋଟାଏ ଅଧେ ଉଠାଇବାକୁ ଆରମ୍ଭ କଲେ ।

"ଦେଖ, ଦେଖ, ଶିକାର ଭାରଯାଦ"—ପୁରୁଆ ବଗାଳ ଚିତ୍କାର କରି ଉଠିଲା ।

ସମସ୍ତେ ଚାହିଁଲେ ହୁଡ଼ାର ବଡ଼ ଶିମୁଳି ଗଛ ଆଡ଼କୁ । ଶିନା ଆଜି ତା ଯାନ ଗାଇ ଗାନ୍ଧି ( କୁଷ୍ଟିବାପ ) ପଣ୍ଡିମକୁ ଗଛର ସେହି ବଡ଼ ଡାଳଟା ପ୍ରାୟ ଦଶ ହାତ ଉଚ୍ଚରେ ପ୍ରଥମ ହୋଇ ଗଣ୍ଡିରୁ ବାହାରିଛି ସେଥିରେ ଯୋଡ଼ାଏ ବଡ଼ ବାଉଁଶ ଲଗାଇଛନ୍ତି ଓ ଉପରକୁ ଚଢ଼ିବା ଚେଷ୍ଟାରେ ଅଛନ୍ତି । ଗଛର ଗଣ୍ଡିଟା ଏତେ ମୋଟ ଯେ, କୁଣ୍ଢାଇ ଉଠିବା ମୋଟେ ସମ୍ଭବ ନୁହେଁ ।

ରାମ ରାଉତ କହିଲା, "ଏଁ ଚାଳିଶର ଆଉ ରଙ୍ଗ ନାହିଁ । ବେଳ ଟାଏ ଅଧେ ହୋଇଛି ? ଦଶ ଏଗାରଟା ବର୍ଷ—ଫେର ବଦଳି ।"

"କାଲି ଏଗାରଟା ହୋଇଥିଲା । ଏଜି ଉର୍ଜନ ହେଉଥିବ" ଖେତ୍ରା ଭୂମ କହିଲା ।

"ଗୋଠାକ ଆଠଣା ଦାନ୍ । ଜେଲଖାନାରୁ ଆସିଥିଲା ।"

"ନା, ନା, ବୁଲକୁ । ବାରଟାରୁ ତୁଅ ପୂରିଲେ । ଦୂଇଟା ଆକାମି ହୋଇଗଲେ ।"

ଗ୍ରେଟା ଧୋବା ଆଉ କହିଲା, "ମୁଁ ସବୁଦିନ ଲୁଗା କାଚିଲାବେଳେ ଦେଖେଁ, ଚଳ ଦୁଇଟା ଡେଇ ଶିଖ ଦରଖାସ୍ତ ନିଜ ହାତରୁ ଗୋଠାକୁ ଗୋଠା ଚରୀ ଆସୁଛନ୍ତି ।"

“ବଜାରେ ଚାଲ ବୁଲା ହୋଇଯିବ ।” ଝୁରିଆ କହିଲା ।

ଝମ୍ପଦୂରରୁ ଶିବ ମନ୍ଦିରର ଚୂଡ଼ାଟା ଖୁବ୍ ସ୍ପଷ୍ଟ ଦିଶୁଛି । ତେବେ ଏବେ ଦେଖିଲି ଯେ, ସେଠି କେତେ ଜଣ ତରୁଣ ଯୁବକଙ୍କୁ ଝୁଲି ଆସି ସିନେମା ଅଭିନେତ୍ରୀଙ୍କୁ ଦର୍ଶନ କରନ୍ତି ସେମିତି କେତେ ଲୋକ ଲୁଙ୍ଗି ଟାଙ୍ଗିଥିବା ବାଳ କପାଳରେ ପଡ଼ ଶିବଙ୍କୁ ଗୋଟାଏ ଅଫଟୋଗ୍ରାଫ ରୂପ ଦେଉଛନ୍ତି ।

“ଖୋକାଟା ବାପ୍ପା ଚେଲା ନା କ'ଣ ? ଏତେ ଦୂରକୁ ଶିମୂଳି ଚେର, ଅଦ୍ଭୁତ ଅଭିନୟ ଦ'ପହର ଖେଳରେ...” ମୁଁ କହିଲି ।

“ତୁମେ ତାଙ୍କୁ ବେଶୀ ବାପ୍ପା ବୁଝନ୍ତ । ସପ୍ତାହ ଶାନ୍ତ ବେହାର ଗୁରୁ ମୂଳ ପଇସାରେ କୁକୁଡ଼ାଙ୍କୁ ଖାଇବ ଖରଚ ହେବ ।”—ଗ୍ରାମ ଗଉଡ଼ ସହାନୁଭୂତି ସହିତ କହିଲା ।

ଶିବ କଣ୍ଠଟା ଭଳି ଦେଖି ଜଣ ଉପରକୁ ଲୁଗାଟା ଟାଣି ଆଣିଲି । ପୂର୍ବ ପଶ୍ଚିମର ଠାକୁର ଠାକୁରାଣୀଙ୍କୁ ଜୁହାର କରି ଆରମ୍ଭ କଲି ସ୍ୱର୍ଗାରୋହଣ ପର୍ବ । ତେଣୁ ତେଣୁ ଗଛର ଏଣେ ବାର ହାତ ଦୂରରୁ ସେଠି ଡ୍ରାଇଭର ଡାଳଟା ପଶ୍ଚିମକୁ [illegible] ଆମ୍ବଗଛ ଘୋଡ଼ାକର ଅଗ ଉପରକୁ ଝୁଲିଥିଲି ସେଇଠି ଚନ୍ଦ୍ରଶ୍ରୀ ଗ[illegible]ପା ପରେ ପୂର୍ବ ଦିଗ ଦିଆଯିବ ଲମ୍ବ ବସ୍ତା ।

ପାନଦୋକାନର ଝୁଡ଼ାଟା ଟାଣି ମୁହଁଟା ବନ୍ଦ କରୁଁ କରୁଁ ଦୋକାନର ଷଣ୍ଢ ଗଣ୍ଡୁଶି ଖୋଲିଲେ, “ଶିବଙ୍କୁ ଦେଖିଲି ସେ ଦିନ—ଶିବ କୁ ପାନଦୋକାନ ଗୁଡ଼ିଏ କାହିଁକି' ! ସେ କହିଲେ “ନନା, ମୋତେ ଏ ସରକାର ବାପ୍ପା ମାରିଦେବେ । ଯାହା-କିଛି ନ ଦେଲା ପଇସାରେ ଏ ବୋଝଟା ଅଣାଯିବ । ନୂଆ ସରକାର ବାବୁ ନିର୍ଦ୍ଦେଶରେ ସରକାରୀ ଘୋଡ଼ାଏ ଜଣ ଆଣିଛି, ସେ ଉପରେ କଳର ଅଫିସକୁ ଚଳାଇ ଦେଇ ତେଜ ଓଜନ କରନ୍ତି । ପାଞ୍ଚ ମହଣ କ ପନ୍ଦର ସେର ଲାଗିବ କମିଶ ? ଯେତେ ପଥର କହୁ ନାହିଁ, ପଚାରିଲେ କହେ, ବିରକ୍ତ କଲେ । ନିଷ୍ଠା-ବୁଦ୍ଧି ଉପରେ ଯିବ ସବୁ ଦୋକାନ ତୁଟି ଦେଇ ।”

"ଶୁଣ, ଯିବା । ତାକୁ ମନା କରିବା, ଟ୍ରେନ ଆସୁ ।"
——ମୁଁ କହିଲି ।

ବୁଢ଼ା ଗୁରୁଜନ ଗାଁବାଲା ଏକା ସ୍ୱରରେ କହିଲେ 'ମରୁ ଦେଇଥା, ମଲେ ଗାଁରୁ ଶ୍ରେଷ୍ଠ ବଟପାର ବନ୍ଧ ହୋଇଯିବ ।"

[illegible] ଦେଖିଲି ଶିମୂଳ ଗଛଟି ଠିଆ ହୋଇଛି ଏକ ଲମ୍ବା ଏକ ସ୍ଥାନରେ । ପ୍ରେତ ମୂରତି ଖଣ୍ଡିଏ କରେ ଗଛର ଗଣ୍ଡିରେ ପାହାଚଟାଏ କାଟିଛି, ସେଇଠି ଗୋଟିଏ ବୁଢ଼ା ଅଙ୍ଗ ଫୁଲ ଏଠି ସେଠି ଗଣ୍ଡିର ଆବୁଗୁଡ଼ାକୁ ଧରି ଉଠି ବସିଛି ଷିପ୍ର ଗତିରେ । ଦେଖିଲି ଗଛର ଅଧାଅଧି ଉଚ୍ଚତାର ଠିକ ଏ ଉପରୁ ଦୁଇଟା ବଡ଼ ବଡ଼ ଡାଳ ସିଧାସିଧା ହୋଇ ଯାଇଛି ଆକାଶ ଆଡ଼କୁ ଯାଇଛି ସେଇଠି ଶିଳ ଚିହ୍ନ ଲେଖି । ମୂଳରୁ ଶେଷ ପର୍ଯ୍ୟନ୍ତ ଗଛଟାକୁ ଥରେ ଦେଖି ଦେଲି ।

ଏ ଗଛଟା ଜମିର ସୀମିତ ଗଛ ନୁହେଁ । ଏହାର ମହିମା ପାଖଆଖ ଦଶ କୋଶର ଲୋକ ଜାଣନ୍ତି ଓ ସଡ଼କରେ ଗଲାବେଳେ, ଫେରିଲା ବେଳେ ଗଛ ଆଡ଼କୁ ଚାହାନ୍ତି ବିନା ରାସ୍ତାରେ କେହି ଯାଆନ୍ତି ନାହିଁ । ଏ ଗଛର ମହିମା ବର୍ଣ୍ଣନା କରି "ଗୋଟିଏ ଶିମୂଳ ଗଛର କାହାଣୀ" ବୋଲି ଯେଉଁ ପ୍ରବନ୍ଧ 'ଆସନ୍ତା କାଲି' ପତ୍ରିକାରେ ବାହାରିଥିଲା ତାକୁ ନ ପଢ଼ିଛି କିଏ? ଜଣେ ମହାକୁଡ଼ ବୈଶାଖ ମାସ ଦ୍ୱିପହରରେ ଗୋବର ଗୋଟେଇ ଏଇ ଗଛ ମୂଳକୁ ଆସିଥିଲା ବୋଲି ସେଇ ଦିନ ଘଣ୍ଟାରେ ରକ୍ତ ବାନ୍ତି କରି ପରା ମରିଗଲା । ଚନ୍ଦ୍ରପୂର୍ଣ୍ଣିମା ରାତିରେ ଧଳା ଫର ଫର ଲୁଗା ପିନ୍ଧି ବ୍ରହ୍ମରାକ୍ଷସଟା ଘୋଡ଼ାଏ ଗୋଡ଼ ମଝାଣିରେ ମହୁଲ ଗଛ ଓ ଆର ଗୋଡ଼ଟା ଏଇ ଶିମୂଳ ଗଛରେ ରଖି ଠିଆ ହୋଇଥିବାର ଖୋଦ୍ କୃଷ୍ଣ ମିଶ୍ରେ ଦେଖିଛନ୍ତି । ଦଶଆଠିକିଆ କମାରର ଲୋକଗୁଡ଼ା ଏ ଗଛକୁ କାଟିବାକୁ ସାହସ ନ କରି ଛାଡ଼ି ଚାଲିଗଲେ ପରା ।

କିନ୍ତୁ ଶିଳ ଲେଖକର ମରିବାକୁ ଭୟ ନାହିଁ । ଯାଆଁଳା ଡାଳରୁ ଗୋଟାକର ଶେଷ ଆଡ଼କୁ ଡାଳଟାଏ ଭୂଇଁ ସହିତ ସମାନ୍ତର ହୋଇ ଲମ୍ବି ଯାଇଛି । ଡାଳଟାକୁ ଦୁଇ ହାତରେ କୁଣ୍ଢାଇ ଧରି ଝିଟିପିଟି କୁମ୍ଭୀର

ପର ପେଟରେ ଶିନ ଘୁରୁଣି ଘୁରୁଣି ଘୁଲୁଛୁ । ଏଇ ଡାଳର ଶେଷକୁ ଉଠିଛୁ ଗଛଟାର ଶେଷ ଡାଳ, ଯାହାର ଟୁପୋଟାଏ ବିଜୁଳୀ ଅଗ୍ରରେ ରହିଛୁ ଶ୍ୟେନ-ବମ୍ପଟଙ୍କ ସ୍ୱାଗତିଙ୍କ ମରି ।

“ଦେଖ, ଦେଖ, ଏଥର ଶିନ ମଲା । ଆଉ ରକ୍ଷା ନାହିଁ ।” କଏ ଜଣେ କହିଲା ।

କେବଳ ଗତ୍ତରର ଯେଉଁ ବସ୍ତ୍ରାଳଣ ଘର ସଜାସଜ ହୋଇଥିଲା ତା ଉପରୁ ଶ୍ୟେନଦୃଷ୍ଟି ପ୍ରେରଣ କରି ସମସ୍ତେ ଶ୍ୟେନ—ଶିନ ଯୁଦ୍ଧ ଦେଖିଲେ ।

“ଦେଖ ହୋ ଖାନ୍ତନୁ ବାବୁ !” ଗାର ପାଣିଗିର ଆରମ୍ଭ କଲେ, “ଦେଖ, ଦେଖ, ତୁମେ ଇଂରାଜୀ ପାଠଶାଠ ପଢ଼ି ଆମର ରାମାୟଣ ମହାଭାରତକୁ ମିଛ ବୋଲି କହୁଥାଅ ପରା । ରାବଣ—ଜଟାୟୁ ଯୁଦ୍ଧ ଦେଖ ଆଖି ଆଗରେ ।”

ଶିମୁଳ ଗଛକୁ ଗୁହ୍ନି ଦେଇ ଯାହା ଦେଖିଲି ତାହା ପ୍ରକୃତରେ କେବେ କେହି ଦେଖି ନ ଥିବ । କାରଣ ପୃଥିବୀର କେଉଁ ଲୋକ କେବେ ଚଲନ୍ତାଗୁଡ଼ାକୁ ମାରିବାପାଇଁ ଛଅ ହାତ ଉଚ୍ଚ ଶିମୁଳ ଗଛ ଉପରେ ଚଢ଼ି ଏ ଆକାଶୀ ସଂଗ୍ରାମ କରିବାର ମୂର୍ଖ ପ୍ରୟାସ କରିବ ?

ଚାହିଁ ଦେଖିଲି ଚଲନ୍ତା [illegible]ଗୁଡ଼ାକୁ ଭୂତା କର୍କଶରବ କରି ବୋମାରୁ ଭାଇଭ ମାରିଲାପରି ଶିନର ମୁଣ୍ଡ ମୁହଁ ହାତକୁ ଲକ୍ଷ୍ୟ କରି ଝାମ୍ପ ମାରୁଛୁ । ଶିନ ଅଦୂରର ଡାଳଟାର ଆଶ୍ରୟ ନେବାପାଇଁ ଯେତେ ଶୀଘ୍ର ଗୁରୁଣି ଗୁରୁଣି ଯାଉଛୁ ଚଲନ୍ତା ସେତେ ବେଶୀ ଶୀଘ୍ର ଶୀଘ୍ର ଆକ୍ରମଣ କରୁଛୁ । ସେ ଚଲନ୍ତା ବସାକୁ ଗଲେ ଅନ୍ୟଟି ବସା ଛାଡ଼ି ସେଇ ଆକ୍ରମଣ ଅପ୍ରତିହତ ରଖୁଛୁ । ଶିନର ଅବସ୍ଥା କ୍ରମେ ଅଡୁଆ ଓ ଅସହ୍ୟ ହେଉଛୁ ।

ମାଚ୍ଛଧର ଶେଷ । ଯେଉଁଠା ଘର ନେଇ ଲଙ୍ଗରଖନଦାରଗଣ, କାଲୁଆ ଓ ଅନ୍ୟ ଧନ୍ଦାଳମାନେ ଦର୍ଶକ ମଧ୍ୟରେ କଏ କୁଆଡ଼େ ବୁଲିଗଲେ ।

ଶିଳ ଚଳେଇଥିବ ମଣିଗାରେ ପୋଲିସ୍ ପୁରିଦେବ ? ଗାଁବାଲ ସମସ୍ତଙ୍କୁ ପେର ହଇରାଣ ହରକତ କରିବ ।”

“ମିଶ୍ରଙ୍କ ଝିଲଡ଼ୁବ ଆଉ ହରଣ ଶ୍ବେର ମୋକଦ୍ଦମା ଦୁଇଟାରେ ପୋଲିସ୍ ଫରେଷ୍ଟର ମିଶି ଆମକୁ କମ୍ ଧାଁ-ଧପଡ କରେଇଛନ୍ତି ?”

ଏତିକିବେଳେ ଆକାଶରୁ ଦୈତ୍ୟବାଣୀ ଶୁଭିଲା, “କାର୍ତ୍ତି ! ତଉତପା, ସ୍ଥଳରେ ଯେଉଁ ଲମ୍ବା ପାହାଡଆ ବାଉଁଶଟା ଅଛି ସେଇଟା ଠାଣି ଆଣିବୁ । ଆଉ କନାରେ ଠିକେ କିରାସିନ ନ ହେଲେ ଜଡା ତେଲ ଲଗାଇ ଅଣିବୁ ।”

କୃତ୍ତିବାସ ଦଶ ବାର ବର୍ଷର ପିଲା । ବାପା ପାଖରେ ରହେ, ଖାଏ, ପିଏ ଏବଂ ଜନ୍ତୁ ସୂନାର ହରଣ ଶିକାରବେଳ ଆସିଲେ ସେ ବଡ ସ୍ଵରର ପଛେ ପାଖେ ଥାଏ, ଲୁଡଆରେ ସୀତାଙ୍କୁ ଜଗି ବସେ ନାହିଁ ।

ଛୁରି ଆଉ ଅସ୍ତ୍ରସବୁ ହୋଇପାରିନି ନାହିଁ । ତା'ର ଅନାସ୍ଥାଭାବ ଦେଖି ଚିଲ ଦୁଇଟା ଝିଣ୍ଟି ଆସି ଆକ୍ରମଣ ଆରମ୍ଭ କରିଦେଲେ । ଛିଟ ଫେଣ୍ଟେଇଥିବା ଡାଳଟାକୁ ଗୋଟାଏ ହାତରେ ଜାବୁଡ଼ି ଧରିଥାଏ । 'ହାତ୍ ଛେଡ଼୍' ଶବ୍ଦ କରି ଅନ୍ୟ ହାତରେ ନିଜ ମୁଣ୍ଡ ମୁଣ୍ଡକୁ ଯଥାସମ୍ଭବ ନଖ ଚଞ୍ଚୁରୁ ବଞ୍ଚାଇବାର ଚେଷ୍ଟା କରୁଥାଏ । ଥରେ ଅଧେ ଚିଲର ଡେଣାକୁ ସେ ପିଟିଲାଣି, ଚିଲ ଦୁହେଁ ବି ତା ଗାଲ ହାତ ରକ୍ତ କଲେଣି । କାରଣ ଛୁଆ ମଝିରେ ମଝିରେ ମୁହଁଟାକୁ ଆଉଁସି ଆଉଁସି କରୁଥାଏ ।

ସାଙ୍ଗରେ ଆଉ ଏକ ଶ୍ରେଷ୍ଠ ଦୈତ୍ୟ ଜଣେ ମଶାଲଟାଏ ଧରି ଦୌଡି ଦୌଡି ଆସିଗଲା କାର୍ତ୍ତି । ବାଉଁଶ ଦୁଇଟା ଜାବୁଡ଼ି ଧରିଲା, ଶ୍ରେଷ୍ଠ ଦୈତ୍ୟଟି । ଅଗ୍ରଜଙ୍କ ମାର୍ଗ ଅନୁସରଣ କରି ଅନ୍ବେଷଣ କଲା କୃତ୍ତିବାସ ସେଇ ବଣୁଆ ଚଢ଼େଇକୁ । ପୂର୍ବପୁରୁଷଙ୍କ ସୁଯୋଗ୍ୟ ଦାୟାଦ ବୋଲି ପରିଚୟ ଦେଇ ଝୁମ୍ପି ଝୁମ୍ପି ଚଢ଼ିଗଲା ଗଛଟାର ସାଆଁକା ଡାଳ ପାଖରେ ଏବଂ ଚିଲଙ୍କ ଘର ପ୍ରେତ ମୂର୍ତ୍ତିଙ୍କ ଲାଗି ଅଗ୍ନିଶରାପ ଜାଳିବା ଉଦ୍ଦେଶ୍ୟରେ ବିଅସିଲା ଅଦ୍ଭୁତ ଲମ୍ବା ମଶାଲଟା ଭାଇ ହାତକୁ ବଢାଇ ଦେଲା ।

ପିଣ୍ଡ ଲା । ଶିନ ଉଲୁଗ୍ର ହୋଇ ଉକଟ ସ୍ୱରରେ ଚତ୍କାର କରି ଉଠିଲ—ଗଗନ ପବନ ପ୍ରକମ୍ପିତ କରି 'ହରି ନାମ ସତ୍ୟ ହେ' । ଯେଉଁର ସ୍ୱର୍ଗ-ରାଜ୍ୟର ଜଣେ ବାସିନ୍ଦାକୁ ମଶାଣିକୁ ନିଆ ଯାଉଛି ।

ଖୁ—ଉ—ଟ୍ ।

“ଖୁଇ, ଗୋଟେ ଗୁଡ଼ୁଛି ।”—କହି, ଚନ୍ଦ୍ର. ପ୍ରଭଗୀର ବେଳ ପିମ୍ପି ବୁଢ଼ୁରେ ମଧ୍ୟ ଗୁଲି ଗଲି ଶୁଣି ପାରିବ ।

ଘୁଷି-ଖୁ—ଉ—ଟ୍ ।

“ଆଉ ଗୋଟେ ଗଲା, ଦେଖ, ଆହୁରି ଅଛେ ।” ଘୁଷି ବୁଡ଼ିବାପର ଘଇ ଉଦ୍ଦେଶ୍ୟରେ ବାଣୀ ।

“ହୁପା ତ ହୁଷି ଦେଉନ୍ତୁ” କହୁ ଆହୁରି ଜୋରରେ ଖୁଆଖୁଆ କରିବାରେ ଲାଗିଲ । ଶିନ ମୁଣ୍ଡକୁ ... ପର୍ଯ୍ୟନ୍ତ ... ଶବ୍ଦରେ ପ୍ରାୟ ଶୁଣି ହେଉଛି ... ବଜେ ପଡ଼ିଲ ।

ମୁଣ୍ଡଦୁଆ ବାଠ' ଫିଟେଣ୍ଡ ଖସାଇ ଦେଇ ସାରି ଟିକିଟ ଅଁଧାରିଆଟାଏ ହସି ଶିନ ଚକକୁ ଫେଲାଇଲା । ଆଶ୍ଚର୍ଯ୍ୟ କଥା ଚଳ ଦ'ଟା ଥାଉ ଆତଙ୍କ କଲେ ନାହିଁ ।

ଖୁଇରେ ଗୋଡ଼ ବେଳ ମାତେ ଆଶୁତ୍ତିର ଶୁ।ସଟାଏ ଛାଡ଼ି ଶିଳ୍ପ ଖାଁ'ର ଚକଗୁଡ଼ିକୁ ଆଦୁର ଖାଙ୍କର ଦଶୁଥାଏ ଦେହରୁ ଧୀର ଧୀର ହୋଇ ଝାଳ ଝରୁଥାଏ ।

ଅନ୍ଧାରେ ହାତ ଦ'ଟା ରଖି ଚରଥା ଦାନ୍ତଗୁଡ଼ାକ ଅଳ୍ପ ଦେଖାଇ ମୁହିଁଭେ ଛୁଞ୍ଚା ହୋଇ ସେ ଦେଖିଲା, ଦ'ଟା ମୋଟା ମୋଟା ନାଲି ଚକ୍ଷୁ ଥିଆକୁ । ଅନ୍ତବୁଜିଲା ବାହାରଚେ ଦ'ଟା ବିକଟାଳ ଦଶୁଛନ୍ତି ।

“ଅନ୍ତବୁଜିଲା ବାହାରିଲେ ବ ଚଥାଁଠା ମରି ନ ହୁବ ନାଇଁରେ କାହିଁ !” ଶିଳିକୁ କହିଲ ଶିନ । “ଦେ ଏଥର ବାଠ କାଠି ଗୋଟାଏ ଜାଗାକୁ ଥାଣ ।”

ଦୂର ସ୍ୱର ଲହରିତ ମୃଦୁ ଝଙ୍କାର ଉଦ୍ଗୀତ ଶୋକ ଗାଥା ପ୍ରସ୍ତୁତ କରିଦେଲେ । ସେ'ସବୁ ସେ'ଠାର ଶ୍ରୋତାଙ୍କୁ ଧରି ଫୁଲେଇ ଫୁଲେଇ ଅଣ୍ଡି ରଖିଲେ ଚଟା ଉପରେ ଓ ନିଆଁ ଲଗାଇଦେଲେ ।

ନିଆଁ ଯେତେବେଳେ ଧୂଳିଏ ଉଷ୍ମ ହୋଇ ଜଳିଲା ଓ ଶେଷ ଶିଖା ହୋଇ ଚଉଁ ସେ'ଠା ମୋଡ଼ମୋଡ଼ ଜଳେଇ ଓ କାଠଗୁଡ଼ାକ ଫଟଫଟ୍ ଠୋ ଠୋ ହେଲା ସେତିକିବେଳେ ଭଲେଇଁ 'ହରିବୋଲ ସବୁ ଶୋକବୋଲ' ଭଡ଼୍ ଟୁଡ଼ା ସ୍ୱରଘୋଷରେ ସାରା ଅଞ୍ଚଳ ନାଚ ନାଚ ବୁଲିଲେ ଏବେ 'ଶବ ସଂସ୍କାର-ପରେ ନୈଷ୍ଠିକ ବ୍ରାହ୍ମଣ ଗଙ୍ଗାସ୍ନାନକୁ ବାହାରି ଗଲେ ଓର ଚନ୍ଦନ ଚ ପ୍ରଦୀପ ରଙ୍ଗ ଲଥା ପୋଖରୀ ଅଡ଼କୁ ବାହାରି ଗଲେ ।

ସେ ଦିନ ବେଳବୁଡ଼ିବାକୁ ସନ୍ଧ୍ୟାରେ ବୁଲ୍ ବୁଲ୍ ବୁଝିଦେଇ ଦେଇ ଅଦୂର ଶିମୂଳ ଗଛଠାକୁ । ଦେଖିଲି, ଦୁଇ ପ୍ରାଣୀ ବସିଛନ୍ତି ମୁହାଁ ମୁହିଁ ହୋଇ: ସେମାନଙ୍କ ଏକ ପାଖରେ ଘୁଷୁରି ଛୁଆ, ଅନ୍ୟ ପାଖରେ କାଳୀ । ଚକ୍ଷୁଗ୍ରୀଷ୍ଟ ଖୋଲି ଅଖି ଟୋଳି ଟୋଳି-ଦୃଷ୍ଟି ଲୁଚିଲ ଦେଉଛି, ସମ୍ଭବତଃ ସେମାନେ ସେଠାରେ ଏକ ପାକସ୍ଥଳୀ ବାସ୍ତୁତନ୍ତ୍ର ଯୋଗାଇ ଦେଉଛନ୍ତି ନିର୍ବେଶ ଓ ଆତ୍ମପ୍ରସାଦ ମୁହୂର୍ତ୍ତକେ ଅପ୍ରତ୍ୟାଶିତରୂପେ ଧ୍ୱସ୍ତବିଧ୍ୱସ୍ତ ହୋଇ ଯାଉଛନ୍ତି ।

ପାରଲୌକିକ ବୋଝାଳୁ କୋଠାର ବରଣ୍ଡାରେ ବସି ଦେଖିଲି ଯାଆଁଳା ଦୁଇଟି ଆକାଶର ଦୂର ମୁଣ୍ଡ ଉପରୁ ବଡ଼ ବଡ଼ ଚୂଇଁଟା କଳା ଚଳର ଫେଣା ଧରି ଝାଉଁଣା ଅଗାର ଆହୁଏସି ନଅର ଚଉଁରେ ସେଇ ଶିମୂଳ ଗଛର ଡାଳ ବସା ଦେଇ-ଦୁଇ ଖବର—ପକ୍ଷୀ ଅଣ୍ଡା-ବେଶେ ପ୍ରଚାରିତ ହୋଇଗଲା । ପାଖରେ ଲୋକେ କେବେ ମୋତେ ପଚାରି କହିଗଲେ, "ଶୋଧଂ ପ୍ରଦେଶ ! ସମ୍ବର, ସମ୍ବର ।"

---

# ଅଶ୍ୱତ୍ଥାମା ହତ ?

ଶୁଅ ମାର୍କା ଫୁଣ୍ଡ୍ ସ୍ୱ—ଏକ ପେଟେଣ୍ଟ ।”

ଗ୍ରେଟ ଚାଲକାଟିଏ ପକେଟରୁ ବାହାର କରି ଅଧ୍ୟାପକ ଜଗାନନ୍ଦ ତାଳିବାକୁ ଆରମ୍ଭ କଲେ । ଟିପା ଖାତାରେ ନୋଟ୍ ନେଉ ନେଉ ସୁବଳ କହିଲା, “ଟଙ୍କାଏ ଷାଠ ପଇସା, ଆଜ୍ଞା ?”

ଅଧ୍ୟାପକ ପୁଣି ଉ'କଲେ, “ଚଉଦ ଡାଲର ।”

ସୁବଳ କହିଲା, “ଡଲର୍, ଆଜ୍ଞା ?”

ଅଧ୍ୟାପକଙ୍କ ଗ୍ରେଟ ଚାଲକାଟି ବୋଧହୁଏ ଏଡ଼ି ଦୁଇଟା ଖଣ୍ଡରେ ପଡ଼ିଗଲେ । ସୁବଳଙ୍କର ‘ଆଜ୍ଞା’ ର ଅର୍ଥ ବୁଝି ନ ପାରି ଜଗାନନ୍ଦ ଟିକିଏ ଲଜ୍ଜିତ ଓ ଅପ୍ରସ୍ତୁତ ହେଲେ ।

“ଆଜ୍ଞା...” ବୋଲି ବାକ୍ୟ ପୁଣି ଦ'ଟ ଗୋଟାଏ ଜିନିଷ ବର୍ଣ୍ଣନ କରିବାକୁ ଯାଉଥିଲେ, କିନ୍ତୁ ସାହସ ପାଇଲେ ନା, ତାଙ୍କୁ ଅଟକି ଗଲେ । ଖାଲି ମୁଣ୍ଡ ଆଉଁସି କୁଣ୍ଡାଇ, ଦୋକାନ ବାହାର ଭିତର ଚାରି ଆଡ଼େ ଆଖି ବୁଲାଇଲେ । ଥାକ ଥାକ କରି ସଜା ହୋଇଥିବା ସମାନ ଓ ସନ୍ ଲାଇଟ ସାବୁନ ଉପରୁ ସେଇ ଖାକି ରଙ୍ଗର ବ୍ରାଉନ ପେପରିଆ ଲମ୍ବା ମୋଟ କାଗଜର ଖୋଳଟା ଥିଲା ତାରି ଉପରେ ତାଙ୍କର ଦୃଷ୍ଟି ପଡ଼ିଲା । ବଡ଼ ବଡ଼ ଛୁପା ଅକ୍ଷରରେ ଲେଖାଅଛି, "Donated by the people of the United States of America—not to be sold or exchanged. ଆମେରିକା ଯୁକ୍ତରାଷ୍ଟ୍ର ଜନ ସାଧାରଣଙ୍କ ଦାନ—ବିକ୍ରି ବା ବଦଳ ପାଇଁ ନୁହେଁ ।

ଗୋଟାଏ ସମୃଦ୍ଧ ମହା ଜାତିର ଏକ ଦରିଦ୍ର ବୁଭୁକ୍ଷୁ ମହାଜାତି ପ୍ରତି କି ଅନବଦ୍ୟ ଅକୁଣ୍ଠ (ଅବାଞ୍ଛିତ) ଅବଦାନ ଓ ବଦାନ୍ୟତା ! ଶ୍ରଦ୍ଧା, ସହାନୁଭୂତି ଓ ମାନବିକତାର କି ଦିବ୍ୟ ବହିଃପ୍ରକାଶ !

ସେଇ ଜିନିଷଟି ଚାଲିଯାଉ ଅଧ୍ୟାପକ ଓ ଜନତାଙ୍କୁ ପାଥେୟ କରିବେନି !

ଟୁକୁର ଟୁକୁର କରି ଭାଗକୁ ଚାରି ଦର୍ଶନାକୁ ଯୋଗାଡ଼ କଲେ ।

ଅଲଟିଏ ଦୋକାନ ପାଖକୁ ନେଇ କହିଲେ, ନିଅ ଦୁଇଟା ସନ୍ଦେଶ ଏଥିରେ ପୁରିବ । ପାଞ୍ଚଟଙ୍କିଆ ନୋଟ୍ଟିଏ ହାତକୁ ବେଖିଁ ଦେଇ କହିଲେ, "ଟିକିଏ ଶୀଘ୍ର ଦେଇ ଦେବ । କାମ ଅଛି, କଲେଜରୁ ଏଇ ଫେରି ଆସୁଛୁ ।"

ଦୋକାନରୁ ଓହ୍ଲାଇ ଯାଉଁ ଯାଉଁ ହଠାତ୍ କ'ଣ ମନେ ପଡ଼ିଗଲା ଯେ ସେ ଘର ଦେଖାଇ ବୁଲି ପଡ଼ିଲେ ଏବଂ ନରମ ଅଥଚ ଗଳାରେ କହିଲେ, "ଘାସିଲାଲ, ଗୁଣ୍ଡଦୁଧ ପ୍ରଚୁର ଲଗେଇ ଥିବ ଦେଇ ପାରିବ ।"

ଘାସିଲାଲ ଠୋ ଠୋ କରି ହସି ଉଠିଲା । କହିଲା, "ଓ ମିଆ ! ଆପ୍ ଦୁକାନ୍ ଖୋଲ୍ ଅର୍ ଉସ୍କୋ ଦେଖି ବୁଝିଲ, ଦୁକାନରେ ପାଉଡ଼ର ଦୁଧ ଖଣ୍ଡି ହଉଛି ?" ତାକୁ ଆଡ଼କୁ ଚାହିଁ ଘାସିଲାଲ କହିଲା, "ଉସ୍କୋ ଡ୍ରେନ୍ ମେ ଫେକ୍ ଦେ ।"

ନିବେଶକୁ ଅଶ୍ରୁ ଦେବା ଭଙ୍ଗିରେ ଦାନ୍ତ ଦେଖାଇ ଦୋକାନୀ ଦୃଷ୍ଟି ଦେଲା, "ଆପ୍ ଆମି ପାଠନ୍ତୁ. ଦେଖ୍ ବା ଯବ ଆଜ କୋଇ ଦୁକାନରେ ମିଳିଯିବ । ଆଜକାଲ୍ ମୁସ୍କିଲ୍ ଏ ସବ୍ ଚିଜ ପାଇବା ।"

ଘସିଲାଲ ଅଳ ସକାଳୁ ଗାଧୋଇ ପାଠୋଇ କାନ୍ଧ କପାଳରେ ଭୁବନେଶ୍ୱର ମନ୍ଦିରର ସିନ୍ଦୂର, ଚନ୍ଦନ ଲଗାଇ ଗୋଟାଏ ନିର୍ଲିପ୍ତ ଯୋଗୀ ପରି ବସି ପାଇଛି—ଶାଗୁଣା ନଡ଼ି ଅଶାରେ ବସିବା ଭଙ୍ଗିରେ ।

ବିଁ ହାତଟା ବାକ୍ସ ଉପରେ । ଆଖି ଦୁଇଟା 'ଧର୍ମଯୁଦ୍ଧ' ବା 'ସତ୍ୟସଙ୍ଗ' କାଗଜ ଉପରେ । ପ୍ରେମ ବଜାର । ଖୁବ ଚନ୍ଦନର ଟୋପା

ସମତାବାଦ, ସରଳ ଦର୍ଶନ, ସ୍ୱାର୍ଥତ୍ୟାଗ ଓ ସ୍ୱାବଲମ୍ବନଶୀଳତା ବିଷୟରେ । କିନ୍ତୁ ପୁସ୍ତି ଗଳ୍ପର ଭଲ ହୁଏ । ତତ୍ପର ସ୍ୱାର୍ଥପର ଏ ସବୁ ମହତ୍ ଉପଦେଶ ଶୁଣିବାକୁ ବେଳ ପାଏ ନାହିଁ । କେବଳ ସମସ୍ତଙ୍କୁ ଶୁଣାଇ ସେ କୁହେ, "ଋଣ କର, ଘୃତ ପିଅ ।"

ଅଧ୍ୟାପକ ଗଣାନନ୍ଦ ମାଛ ବଜାର ଅଡ଼କୁ ଯାଉଥିଲେ, ଶୁଣିଲେ ଦୂରରୁ ଚିତ୍କାର, ସାଂଘାତିକ ଚିତ୍କାର, ପାଞ୍ଚଟଙ୍କା । ସେଠାରୁ ପଚାରି ଏବଂ ଅଟକି ଯାଇଁ ଦେଖିଲେ ପଞ୍ଚାନନ ବଜାରକୁ । ଡାକ୍ତରମାନେ ସବୁବେଳେ ତାଙ୍କୁ ଉପଦେଶ ଦେଉଛନ୍ତି ପ୍ରୋଟିନ ଖାଇବାକୁ । କିନ୍ତୁ ସେମାନେ ମୋଟେ ବୁଝନ୍ତି ନାହିଁ ଯେ ସେମାନଙ୍କର ଏଇ ପ୍ରୋଟିନ ନେବାର ସାମର୍ଥ୍ୟ ତାଙ୍କର ଦରମାର ଅଳ୍ପ ଅଂଶ । ଆମ ଦେଶ ଗରିବ ଦେଶ । ଏଠି କେବଳ ସୋୟାବିନ, କାର୍ବୋହାଇଡ୍ରେଟ ଓ ଭିଟାମିନ ଖାଦ୍ୟ ଅଧିକ ପରିମାଣରେ ଉତ୍ପାଦିତ । ତେଣୁ ବୃଦ୍ଧଲୋକର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ନିମନ୍ତେ ଦରକାରୀ ପ୍ରୋଟିନ ଯୋଗାଇବାକୁ ସେ ସଦା ଚେଷ୍ଟା କରନ୍ତି । ଶାସ୍ତ୍ରଅନୁସାରେ ପତ୍ର ମଧ୍ୟରେ ପୋଇ ଓ ଧନିଆ, ଫଳ ଭିତରେ ବୋଇତାଳୁ ଫୁଲ, ଧଳା ଫୁଲ କହିଲେ ମନ୍ଦାର ବା କଖାରୁ, ଉଦ୍ଭିଦର ମୂଳ ମଧ୍ୟରେ ଶିମ୍ବ, ଆଳୁ, କନ୍ଦମୂଳ, ବା ଯୋଉ ପ୍ରକାର ଲାଭ ଦାୟକ । ଏଗୁଡ଼ିକରେ ଖାଦ୍ୟପ୍ରାଣ ପ୍ରଚୁର ଅଛି, ସହଜ ଲଭ୍ୟ ଓ ଶସ୍ତା ମଧ୍ୟ । ଗରିବ ଦେଶବାସୀମାନଙ୍କୁ ଏସବୁ ଭଗବାନଙ୍କ ଅଯାଚିତ ଦାନ ।

ପଞ୍ଚାନନ ଏଇ ସମୟରେ କାହିଁ ଯୋଉଠି ଥିଲାରେ ବୁଲୁଛି ପଥଭୁଲା ଗଣାନନ୍ଦ ଶୋଭିତ ଚଉକି ବୃକ୍ଷଟିଏ ଭଳି ଅଧ୍ୟାପକ ଅଧ୍ୟକ୍ଷ ଦେଖିଲେ ମୁଦିଲାର ଦୋକାନ ଅଗ ସଡ଼କର ମୋଡ଼ରେ ବସିଛି ।

ମାତ୍ର ଏଇ କେତେ ମିନିଟ୍ ପରେ ଦୋକାନ ସାମନା ଲୋକାରଣ୍ୟ ହୋଇ ଗଲାଣି । ମୁଦିଲାର ଦୋକାନ ଭିତରେ ଓ ବାହାରେ ଉତ୍ତେଜନା ଭରପୁର । ଘର ଦୁଆରିଆଟ, ହଇଚଇ । ଝଗଡ଼ା ଲାଗିଯିବା ଉପରେ ।

ଫୁଚଲାଲ ଦୋକାନ ଆଗର ନର୍ଦ୍ଦମା ସଫା ହଉଛି । ଦାରୋଗା ନିଜେ ଛିଡ଼ା ରହି କାମ ତଦାରଖ କରୁଛନ୍ତି । ଖୁବ ଛଅଜଣ କଳା କଳା ଢଣ୍ଡିଆ ନର୍ଦ୍ଦମାରୁ ଅଇଳା ମଇଳା ସବୁ ବାହାର କରୁଛନ୍ତି ପଙ୍କ କାଦୁଅରେ ଜଡ଼ସଡ଼ ହୋଇ । ଦୋକାନର ପାହାଚ କଡ଼କୁ ଦସ୍ତକ ପାଖରେ ମଇଳ କୁଡ଼ ହୋଇଗଲାଣି । କଳା ପାଣିର ଧାରଣାଟାଏ ସଡ଼କ ଆଡ଼କୁ ସିର ସିର ହୋଇ ବହି ଯାଉଛି, ଘୋର ଦୁର୍ଗନ୍ଧ । ଲୋକେ ନାକ ବନ୍ଦ କରୁଛନ୍ତି ।

ଫୁଚଲାଲ ଗାଦି ଖଟ ଉପରେ ଛିଡ଼ାହୋଇ ବଡ଼ ପାଟିରେ କହୁଥାଏ, "କେତେ ବାର ହାମ୍ ତୁମକୁ କହିଲ ଦୁକାନ ସାମନାରେ ଏ ସବ୍ ଜମା ନା କରିତେ ? ସବ୍ ଗନ୍ଦା ହୋଉଛି ତବ୍ ସାଫ୍ କରିବା ହେଲ ହଉଛି । ଆଦମି ଯେ କେତେନା ହଇରାନ୍ ହଉଛି ତୁମ୍ ଲୋକକୁ କ୍ୟା ମାଲୁମ ପଡ଼ ଛି ? କେତେ ବାର କେତେ ଲୋକ ମୋର ପାଖରେ ତୁମ୍ ଲୋକ୍ କିରଲ୍ ଗାଳି ଦା ?"

ଦାରୋଗା ଜବାବ୍ ଦେଲ, "ଉଃ ! କମ୍ପେନ୍ ! ଲୋକେ ଯୁଆଙ୍କ ପାଖରେ ନ କରିବେ ତ ଆଉ କହିଁଠି କରିବେ ? ଲୋକମାନଙ୍କ ପାଇଁ ଯୁଆର ଆତ୍ମା ବହୁତ କାନ୍ଦୁଛି ନା ।"

"ନା ନା ! ମୋର ଆତ୍ମାଟା କାନ୍ଦୁଛି । ଯେ ଦିନ ଠବ୍ ଟୋଙ୍କ ସାଥିରେ ମିଲକର ଦୋକାନରୁ ବୋରା ବୋରା ଗୁଡ଼ ମଇଦା ଅଟର ବେଦନ, ଟିଣ ଟିଣ ଘରଷାର ତେଲ ବାହାର କରିଲୁ ତୋର ପ୍ରାଣଟା କେତେ କାନ୍ଦିଲା ?"

"ତୁ ତା ବେ ବା ଗୁଣ୍ଡ, ଭଦ୍ରଲୋକ ଦେଖି କଥା କୁହ, ଫୁଚଲାଲ ବାବୁ ! ମୋ ଉପରେ ଦୋଷ ଲଦୁଛ କାହିଁକି ? ସେ ତ ପୋଲିସ ବାବୁଙ୍କ କଥା ।"

"ସଇତାନ୍ ! ଆଦମିକୁ କୋନ୍ ଖବରଟା ଦେଲ ? ଦେଖ ବଦନର କେତେନା ଦିନ ତୁ ବଡ଼ାଲକା ମାଫିକ୍ ଦୁଧ ପିଇବୁ ?"

ଦାରୋଗା ଚଟ୍ ଉଠିଲେ ନିଜକୁ ସମ୍ଭାଳି ନେଇ । ହୁଗଲିଲ ବହିପତ୍ରକୁ ଓ ବାକ୍ସଟା ଖୋଲି ପୁଣି ଯତ୍ନକରି ବନ୍ଦ କରି ଦେଲେ । ସେ ଅତି ସୁଯୋଗଟାଏ ପାଇଛନ୍ତି । ଭେଜାଲ ମୋକଦ୍ଦମାଟାଏ ଖଞ୍ଜି ଦାରୋଗଟା ତାକୁ ସେ ଦିନ ପରି ହଇରାଣ ହଜତ୍ ରେ ପକାଇଛନ୍ତି ଜେଠମଲ ହୁଗଲିଲର ପୁଅ ସେ କଥା କଣ ଏତେ ଶୀଘ୍ର ଭୁଲିଯିବ ?

ଦାରୋଗା ବି ନଗ୍ରେପ୍ତବନ୍ଦା, ଏକେ ତ ମଞ୍ଚା ଯାଞ୍ଚିବା ହେଲ ଭୁଲେ, ତା ଉପରେ ପୁଣି ପାବ୍ଲିକ୍ କର୍ମଚାରୀ ହୋଇ ଏତେ ଲୋକଙ୍କ ଆଗରେ ହଟ୍ ବଜାର ଉପରେ ଅପମାନ ସେ ସହିଯିବ କିମିତି ? ଖାଲି ଟଙ୍କା ବଳରେ କେତେ ସହଜରେ ପ୍ରମାଣ ମକଦ୍ଦମାରୁ ଗଲା ବର୍ଷ ଖସି ଯାଇଛନ୍ତି ଏଇ ହୁଗଲିଲଟା ।

ଅଧ୍ୟାପକ ଶିବାନନ୍ଦ ସବୁ ଦେଖୁଥାନ୍ତି ଓ ଠିଆ ହୋଇ ଶୁଣୁଥାନ୍ତି କଷ୍ଟରେ କେଉଁଠି କମିଟି ଗୁମିଟି ଖେଳରୁ ମହାଗ୍ରବତ ହୋଇଛନ୍ତି । ତାଙ୍କର ମନେ ପଡିଲା ଡନ୍ କୁଇକ୍‌ଜୋଟ୍ କଥା । ଦୁନିଆଁରେ ଯେଉଁଠି ଅତ୍ୟାଚାର, ନାରୀଧର୍ଷଣ, ଉତ୍ପୀଡନ, ଦୁର୍ବଳଙ୍କ ଉପ୍ରାତ ସେଇଠି ଡନ୍ କୁଇକ୍‌ଜୋଟ୍ ପରି ବୀରମାନେ ଅବତୀର୍ଣ୍ଣ ହୋଇଛନ୍ତି । ତାଙ୍କ ପରି ଅଧ୍ୟାପକମାନେ ଯଦି ଏ ଯୁଗରେ ନାଇଟ୍ ହୋଇ ନ ବାହାରନ୍ତି ତେବେ ଦେଶର ଦୁର୍ଗତି ଦୂର ହେବ କିପରି ?

ପୁଣି ବଚସା ଜୋର ହେଲା, ବେଶୀ ବେଶୀ ଲୋକ ଜମା ହେଲେ । ହୁଗଲିଲ ଦାରୋଗା ଉପରେ ଗାଳି ବର୍ଷଣ କରୁ କରୁ କହିଦେଲା 'ମ୍ୟୁନିସିପାଲିଟିକା କୁତ୍ତା' । ଦାରୋଗା ଆଉ ସମ୍ଭାଳି ନପାରି ଫାଇଲ୍ ରେଜିଷ୍ଟ୍ରି କାଣ୍ଡଲେ ଯାକ ହୁଗଲିଲ ଅଡକୁ ଫିଙ୍ଗିଲେ । ଅଧ୍ୟାପକ ଦେଖିଲେ ମଧ୍ୟସ୍ଥତା ପାଇଁ ଉଚିତ ବେଳ ଆସିଲା । ସେ ଲୋକଙ୍କୁ ଠେଲି ଠେଲି ଉପରକୁ ଉଠିଗଲେ ଓ ଦୋକାନର ଏମିତି ଏମିତି ଗୋଟାଏ ଜାଗାରେ ଛିଡା ହେଲେ ଯେଉଁଠି ଉଭୟ ଦାରୋଗା ବାବୁ ଓ ହୁଗଲିଲର ଦୃଷ୍ଟିରେଖା ମିଶୁଛି ।

"ଅଚ୍ଛା, ସେଉଁକ ହେଉ, ଆଜ…" ବଡ଼ ପାଟିରେ ଅଧ୍ୟାପକ ମାଷ୍ଟରୀ ଆରମ୍ଭ କଲେ, ଦାରୋଗାଙ୍କୁ ଲକ୍ଷ୍ୟ ।'

ଦାରୋଗାଙ୍କୁ ମନେ ହେଲା ସେ ଯେମିତି ଭଦ୍ରଲୋକଙ୍କୁ କେଉଁଠି ଦେଖିଛନ୍ତି । ହୁଏ ତ ଫୁଟବଲ ଖେଳରେ ଟେମ୍ପୋରାରୀ ସାଙ୍ଗରେ ବରାବର ବସି ଚେନାଚୁର ବାଦାମ ଖାଉଥାନ୍ତି । ପ୍ୟାଣ୍ଟ କଟେଇରେ ତା ଭାମ ଭରିବାର ଦେଖିଛି । ତଥାପି ସେ ନିଶ୍ଚୟ ଭଦ୍ରଲୋକ ହୋଇଥିବେ ।

"ବେଶ୍ ! ଆପଣ ଦୟାକରି କଥାଟା ବୁଝନ୍ତୁ । ବୁଝନ୍ତୁ, ଦୋଷ କାହାର । ଲୋକଟା ଭୁଲଟାରେ କଣ କରୁଛି ।"

ପ୍ରଫେସର ବାବୁଙ୍କୁ ଦେଖି ଦେଲା ମାତ୍ରେ ଧୂର୍ଜଟିଙ୍କ ମୁଣ୍ଡ ଭିତରେ ନୂଆ ଖବର ଗୋଟାଏ ତେଜ ଖେଳିଗଲା । କହିଲା, "ଏଇ ପ୍ରଫେସର, ସ୍କୁଲମାଷ୍ଟରଗୁଡ଼ାକ ଡିକ୍ସନେରିରୁ ଅଜସ୍ର ମୂଳ ଧରି 'ଟୋକବଜାରି', 'ମୁନାଫାଖୋର', 'ଭେଜାଲ', ଅଖାଦ୍ୟ, ଏମିତି ଗୁଡ଼ାଏ ଶବ୍ଦ ତିଆରି କଲେ କିଏ? ଆମ୍ଭମାନଙ୍କ ଅମଳରେ ତ ଏସବୁ ଶବ୍ଦ ନଥିଲା ! ଯଦି କେବେ କେଉଁ ସ୍କୁଲରେ ପଢିଥିଲା ସେତେବେଳେ ବି ତ ଏ ଶବ୍ଦ ବହିରେ ନଥିଲା । ଯେତେ ଯେତେ ନୂଆ ସ୍କୁଲ ଓ କଲେଜ ବଢୁଛି ସେତେ ସେତେ ନୂଆ ଶବ୍ଦ, ଟେକ୍ସ, ଆଇନ, ମାପ ଓଜନ ଓ ଚୋରା ବାହାରୁଛି । ଦାରୋଗା, ପୋଲିସ, ପ୍ରଭୃତି ବଦମାସଙ୍କୁ ଏ ଶବ୍ଦ ସବୁ ଶିଖାଉଛି କିଏ ? ଏଇ ପ୍ରଫେସର ମାଷ୍ଟରଗୁଡ଼ାକ ପରା । ବେଶ୍, ବୁଦ୍ଧି ଶିଖାଇ ଦଉଛି ।"

କଚ୍ଚା ଗୁଣ୍ଡ ଦୁଧ କାଗଜରେ ରଖି ପୁରୁଣା ମୋଡ଼ିବା ପରଠୁ କାଗଜଟାକୁ ଅଙ୍କୁରେ ଜୋର ଘଷି ଘଷି ଦେଇ ଧୂର୍ଜଟି ପିଠିରେ ଯେମିତି ଅଧ୍ୟାପକଙ୍କ ଦୃଷ୍ଟି ଦିଅନ୍ତେ ପଡ଼େ ।

"ପାଉଡର ମିଲ୍କ ତୁମ ଦୋକାନରେ ମିଳୁଛି ?" ଜଣେ ଗ୍ରାହକ ହଠାତ୍ ପଚାରିଲା ।

ଡାକ୍ତର ଟେଟସ ବଡ଼ ଆଶା କରିଥିଲେ ଭଦ୍ରଲୋକ କହିବେ "ତାଙ୍କ ଧାର ଫେର ତ କେଉଁଠି କରୁ ନାହିଁ ।" କିନ୍ତୁ ସେ ନୀରବ ରହିବାରୁ ଡାକ୍ତର ବୁଝିଲେ କଥାଟା ବୋଧହୁଏ ସତ । ପ୍ରଫେସରଙ୍କର ଏ ଅଭିଯୋଗ ହୁଏ ତ ସେ ଷ୍ଟେସନ କରି ଦେଇଥାନ୍ତା ଯଦି ଅଧ୍ୟାପକ ତା ଆଡ଼କୁ ମୁହଁ କରି ଛୁରା ହୋଇଥାନ୍ତେ ଓ ସେ ଭଡ଼ ଭିତର ଦେଇ ତାଙ୍କ ଲୁଗାପଟା ଦେଖି ପାରୁଥାନ୍ତା । ସେ ଧରି ନେଲେ ଯେ, ଭଦ୍ରଲୋକମାନଙ୍କ ପୋଷାକପତ୍ର ନଷ୍ଟ କରିବାରେ ସେ ପରିବେଶର ଦାୟୀ । ଡାକ୍ତରର ଭଙ୍ଗୀ ଓ ଆଚରଣରେ ଉଦ୍ବେଗ ପ୍ରକଟିତ ହେଲା ଓ ତାର ଚକ୍ଷୁ ଯୋଡ଼ିକ କ୍ଷମାପ୍ରାର୍ଥୀ ହେଲେ ।

ପ୍ରଥମ ରାଉଣ୍ଡ ପୂରା ହେଲା, ଅଧ୍ୟାପକଙ୍କ ଅପେକ୍ଷା ନୀରବତା ଓ ଉତ୍ସାହମୟ ଗାମ୍ଭୀର୍ଯ୍ୟ ପ୍ରଫେସରଙ୍କ ଶ୍ରେଷ୍ଠ ବିଜୟ ଘୋଷଣା କଲା ।

ଦ୍ୱିତୀୟ ପର୍ଯ୍ୟାୟର ଶତ ହେଲା ପ୍ରଫେସରଙ୍କ । ଗତ ସେପ୍ଟେମ୍ବରଠାରୁ ସେ ଏକ ବେଳେ ଆଉ ମୁଠାଏ ଦୁଇ ମୁଠ ବଢ଼ାଇ ଦେଲେ ସେ ଆଉ ଉଠି ପାରିବ ନାହିଁ । ଏବେ ଦିନେ ପ୍ରଫେସରଙ୍କୁ ଧାର ଉଧାର ଦେଉଛି, ତାଙ୍କ ସାଙ୍ଗରେ ଗପ୍ପ ଗପ କରୁଛି, ଖାଇଁ କରିବାକୁ ମିଳୁନଥିବା ଚୂଡ଼ା ଦୁଧ ବର୍ତ୍ତମାନ ଦେବାକୁ ଯାଉଛି । ଭଲ ଲୋକଟା କ'ଣ ଏତେ ଉପକାର ମନେ ପକାଇବ ନାହିଁ ?

ଡାକ୍ତରେ ଟଙ୍ଗା ହୋଇଥିବା କେଲେଣ୍ଡରର ଫଟୋ ଗଣେଶ ମୂର୍ତ୍ତିକୁ ସ୍ପର୍ଶ ଦେଇ ଡେଇଁ ଉଠିଲେ ପ୍ରଫେସର ।

ଆରମ୍ଭ ହେଲା ତୃତୀୟ ରାଉଣ୍ଡ । ପୁଡ଼ୁଲାଟା ଅଳ୍ପ ଫିଟାଇ ଆଉ ଅଧ ମୁଠେ ଦୁଧ ଚୂଡ଼ା ଉପରେ ଦେଇ ବାଁ ହାତରୁ କାଢ଼ି ପକାଇ ଦେଇ ସେ ପୁଡ଼ୁଲାରେ ଚୂଡ଼ା ମୁଠାଏ ଗୁଡ଼ାଇ ଖାଇ ଅନ୍ୟମନସ୍କ ରହି କହିଲେ, "ଆଜ୍ଞା, ପ୍ରଫେସର ବାବୁ, ଆଜି କୁଆଡ଼େ ଯେମିତି ଲୋକଙ୍କ ନ ହୋଇଛି, ଲେକିନ୍ ଭାଲ୍ ଇଧି ଜାଗାମେ ଆପ୍ ଡେରେକ୍ଟରେ ପତ୍ର ପାଇଥିଲେ ନା ଏଇ ସବୁ ମଇଳାରେ ହାବୁଡ଼ ଖାଇ ? ବଡ଼ଲୋକ ।"

ଉଃ! କେଡ଼େ ନିର୍ମମ, ସଇତାନ୍ ଏ ଗ୍ରାମ୍ବାଳକଟା । ଲୋକଟିକୁ ଆଙ୍ଗୁଳି ଦେଖାଇ ଦେଲେ ସେ ବାବୁ ଚିହ୍ନିପିବ । ଅଧ୍ୟାପକ ଗର୍ଜିଲେ କହିଦେବେ, "ନା ନା ! ପିଠୁ କଥା । କହାପିଠୁ ! ତାହା ମିଛ ।" କେମିତି ଏ କଥା କହିବେ କହିଛ ? ପରିସ୍ଥିତି ଯିମିତି ଜଟିଳ ସିମିତି ଅପ୍ରତ୍ୟାଶିତ । ଗ୍ରାମ୍ବାଳକ ଦୁଧକୁ ବାଲ୍ଟି କହିଲ ବେଳେ ଓ ଲୁଗାପଟା ମଇଳା ପରିସ୍ଥିତି କଥାରେ ସେ ଚୁପ୍ ରହିଛନ୍ତି ଓ ଗ୍ରାମ୍ବାଳକକୁ ଯେ ଦୋଷ କେବଳ ଦୃଷ୍ଟିରୁ ଦେଇଛନ୍ତି ତା ନୁହେଁ, ଲୁପ୍ତାସ୍ତତ ମଧ୍ୟ କରିଛନ୍ତି ।

ତାଙ୍କୁ ଜଣାଗଲା, ସେ ଜୀବନର ଏକ ମହାସଙ୍କଟ କ୍ଷଣରେ ଛିଡ଼ାହୋଇଛନ୍ତି । ମହାଭାରତ ଯୁଦ୍ଧର ଏମିତି ଏକ ମହା ସନ୍ଧିକ୍ଷଣରେ ଯୁଧିଷ୍ଠିରଙ୍କୁ ପଚାରି ଯାଇଥିଲା ଏମିତି ଗୋଟାଏ ପ୍ରଶ୍ନ—"କୁହନ୍ତୁ ମହାରାଜ, ଅଶ୍ୱତ୍ଥାମା ହତ ନା ଜୀବିତ ?" ଧର୍ମରାଜ ମଧ୍ୟ ଏ ବନ୍ଧ ପାଇଥିଲେ । ଏକ ପାଖରେ ସତ୍ୟ ଅନ୍ୟ ପାଖରେ ସ୍ୱାର୍ଥ—କେଉଁଟି ସେ ବର୍ଜିବେ, କେଉଁଟି ସେ ବଞ୍ଚାଇବେ ? ଉଭୟକୁ ବଞ୍ଚାଇବା ପାଇଁ 'ନରୋବା କୁଞ୍ଜରୋବା' ପରେ 'ଅଶ୍ୱତ୍ଥାମା ହତ' ସହିତ ଯୋଡି ସତ୍ୟବାଦୀ ଧର୍ମ ଓ ବଂଶ ରକ୍ଷା କରିଥିଲେ । ଧର୍ମ ଓ ସ୍ୱାର୍ଥ ଉଭୟ ବଞ୍ଚିଲେ ସିନା କିନ୍ତୁ ଯୁଧିଷ୍ଠିରଙ୍କ ଆଧ୍ୟାତ୍ମିକ ମୃତ୍ୟୁ ହେଲ ।

ଅଧ୍ୟାପକ ସିମିତି ଦ୍ୱୈତବୋଧକ କଥା ଖୋଜୁଛନ୍ତି । ରଘୁବଂଶ, ମହାଭାରତ ଓ ଅନ୍ୟାନ୍ୟ ଶାସ୍ତ୍ରଗ୍ରନ୍ଥ ମନ୍ଥନ କରିବାରେ ସେ ବ୍ୟସ୍ତ । ଏଣେ ଦାରୋଗା, ମେଜେଷ୍ଟ୍ରର, ଜନତା ସମସ୍ତେ ଚାହିଁଛନ୍ତି ନିର୍ନିମେଷ ନେତ୍ରରେ ଯୁଧିଷ୍ଠିରଙ୍କୁ କାରଣ ତାଙ୍କର ଅସ୍ତି ନାସ୍ତି କଥା ପରେ ମହାଭାରତ ଯୁଦ୍ଧର ଭବିଷ୍ୟତ୍ ଗତି ଘୋଷଣା କରିବ । ଜୀବନରେ ଏମିତି ଉତ୍ତେଜକ ଓ ଚାଞ୍ଚଲ୍ୟ ମୁହୂର୍ତ୍ତ ବି ଆସେ !

ଅଧ୍ୟାପକ ଭାବିଲେ, ଏଠି ବା ତାଙ୍କର ସ୍ୱାର୍ଥ କ'ଣ ? ଟିକେ ଗ୍ରାମ ଗୁଣ୍ଡ ଦୁଧ ତ ? ସ୍ୱର ଏତିକ ପାଇଁ ସହୁ ହେବ ନିଜର ମର୍ଯ୍ୟାଦା, ସତ୍ୟ ଓ ଆଦର୍ଶ ସ୍ମରୁଛନ୍ତି ତେବେ ଗୋଟାଏ ମଧ୍ୟ କହିବ, "ଅନ୍ତ୍ୟଯ ଦେବେତୋବସ୍ତୁ-ହାଭୁମିଛନ୍ ବନ୍ଧୁର ମୂଢ଼ ପ୍ରତିଭାପି ମେଙ୍ଗ୍ନମ୍" । କପେ ସ୍ୱ ଖାଇଁଚ !

ମାତ୍ର ଏଇ ସବୁ କରନ୍ତି ଯେ ତାଙ୍କ ଜୀବନ । ଆଜ ସକାଳେ ମ୍ୟୁନିସିପାଲିଟି ଚେୟାରମେନଙ୍କ ଦୁଧବାଲାକୁ ସେ ମନା କରିଦେଇଛନ୍ତି । ଗୁଣ୍ଡ ଦୁଧର ମିଲ୍କସୁଗରକୁ କାଳେ ଠେଙ୍ଗାଏ ଖାଇବାରୁ ଗୁଣ୍ଡ ଦୁଧ ଖାଇବା ଭଲ । କାଣ ପଡେ କରିବା ପାଇଁ ଅଧ୍ୟାପକ ସଦାନନ୍ଦଙ୍କ ଅଧର ସ୍ଫୁରିତ ହେଉଥିଲା କିନ୍ତୁ ସେ ଦାରୋଗା ଆଡ଼କୁ ଦୃଷ୍ଟି ଦେଲା ମାତ୍ରେ ସେ ସ୍ଫୁରଣ ବନ୍ଦ ହୋଇଗଲା । ତାଙ୍କୁ ଜଣାଗଲା, ଦାରୋଗା ଆଉ ଚେୟାରମେନ୍ ଏକା ଲୋକ । ପରସ୍ପର ସାହାଯ୍ୟକୃତ ପକ୍ଷରେ ଦୁଧ ଟଙ୍କାର ବ୍ୟବସାୟ ଚଳାଉଛନ୍ତି ।

ସୁନ୍ଦରୀର ଚେହେରା ଜୋର ଟାଣି ଦେଇ ସ୍ୱାଗତ ପୁଟୁଳାଟା ହାତରେ ନଚାଇବାକୁ ଲାଗିଲା ଏବଂ କହିଲା, "ବଡ଼ଲୋକର ପ୍ରଫେସର ବାବୁ ! ଏଥିରେ ଭାବିବାର କଣ ଅଛି ? ଆଉ ତ ଅଚିନା ଦୋକାନରେ ପଡ଼ ଯାଇ ନ ଥିଲା !"

ସଦାନନ୍ଦ ଭାବିଲେ ପୁଟୁଳାଟା ତା' ହାତରୁ ଛଡ଼ାଇ ଆଣି ତାର ମୁହଁକୁ ଜୋରରେ ଫିଙ୍ଗିଦେବ ନିଶ୍ଚିତ ସେମିତି କଲେ ତାର ମାର ହୋଇଯିବ । କିନ୍ତୁ ଏତେ ଲୋକଙ୍କ ଆଗରେ—

ମୁହଁ ଲାଲ ହେଉଥିଲା ତାଙ୍କର । ନିଶ୍ଚିତ ସେ ବାହାରର ଦାମ୍ଭିକ ଦୃଷ୍ଟିକୁ ଲୁଚାଇବାକୁ ଯାଇ ଭିତରକୁ ଟାଣି ଧରିଛନ୍ତି ଏକ ବିରାଟ ଅନ୍ତର୍ଦ୍ୱନ୍ଦ୍ୱ । ଯାହା ସେ ବାହାରେ ଲୁଚାଇବାକୁ ଚେଷ୍ଟା କରୁଛନ୍ତି କିନ୍ତୁ ଶତ ଚେଷ୍ଟା ସଫଳ ହେଉନାହିଁ । ସର୍ବଗ୍ରାସୀ ଅଜଗରକୁ ଏଡ଼ିବା ପାଇଁ କୁରଙ୍ଗ ହରିଣ ଯେତିକି ଚେଷ୍ଟା କରୁଛି, ସେତିକି ସେ ବୁଭୁକ୍ଷିତ ସର୍ପ ତାକୁ ଆହୁରି ପାଖକୁ ଟାଣି ହୋଇ ଯାଉଛି ।

ହଠାତ୍ ସାହସ ଜିନିଷ ଅଟେ ତାଙ୍କର ନାହିଁ । ନିଶ୍ଚିତ ପାଠେଲାର 'ଟାଇଗର' ପାଇଁ ଗଡ଼ାରେ ସଜାଡ଼ା ଗର୍ଜନ ଭଳି ନିଶ୍ଚିତ 'ବଟ୍ଲଲୋଡ଼' ଦୁଷ୍ଟର ଜବାବ୍ ତାଙ୍କ ମୁହଁରେ ନଥିଲା । ନୀରବତା କଥା ଠାରୁ ଅନେକ ଅଧିକ ବାଙ୍ମୟ ଓ ଫଳପ୍ରଦ ହେଲା । ଦାରୋଗା ଓ ଜନତା ବୁଝିଲେ ଯେ,

ଅଧ୍ୟାପକ ପ୍ରକୃତରେ ଦୁର୍ଗନ୍ଧ ନର୍ଦ୍ଦମାରେ ପଡ଼ିଥିଲେ, ହୀରାଲାଲ ପରୋପକାରୀ ଲୋକ ଓ ମ୍ୟୁନିସିପାଲିଟି ଲୋକଗୁଡ଼ାକ ଶମନ ଦୂତ । ମନେ ମନେ ସମସ୍ତ ଅଧ୍ୟାପକଙ୍କ ନର୍ଦ୍ଦମାରେ ପଡ଼ିଥିବା ସମୟର ବିକଳ ଓ କୁତ୍ସିତ ରୂପ ଅନୁଧ୍ୟାନ କରି ତାଙ୍କ ପ୍ରତି କୃତଜ୍ଞ ହେଲେ ।

ମ୍ୟୁନିସିପାଲିଟି ଗାଡ଼ି ଆସି ଗଲା । ଦାରୋଗା ବୁଝିଲେ ଅଧ୍ୟାପକଙ୍କୁ । ମେହେନ୍ତରମାନଙ୍କୁ ବୁଝି ଦାରୋଗା କହିଲେ, "ଏଠି କାଲି ଠାରୁ ଆଉ ନର୍ଦ୍ଦମାର ମଇଳା ଜମା କରିବାକୁ ନାହିଁ, ଭଦ୍ରଲୋକଙ୍କୁ ଅସୁବିଧା ହେଉଛି ।"

ଦିକ୍ଷୟ ବହଣ୍ଡ ମୁଦ ଶେଷ । ହୀରାଲାଲ ବଶ କେଜ୍ରୀ ।

"ଦେଖା ପ୍ରଫେସର ବାବୁ, କେଇସା କୃତ୍ତ ହେଇଗିଯା । ଅପ୍‌କା ବୋଲନା ବାତ୍‌କା ଫେରିଯା ନିମ୍ ନ ବୋଲନା ହା ହ ଓଇବେ ।"— ଦାରୋଗା ବୁଝିପିବା ପରେ ହୀରାଲାଲ କହିଲେ ।
[illegible]

ଏତ ବ୍ୟକ୍ତ ପର ସେ ହୀରାଲାଲ ହାତରୁ କଞ୍ଚା ଖଜୁରୀ ଓ ଦୁଧ ପେକେଟ୍ ଥଣି ପକେଟରେ ପୂରାଇଲେ ଓ ଥଳିସବୁ ସାଇକେଲରେ ଝୁଲାଇ ରଖି ବାହାରିଗଲେ ।

ଅନ୍ନପୂର୍ଣ୍ଣା ମିଷ୍ଟାନ୍ନ ଭଣ୍ଡାର ଓ ଜୟଦୁର୍ଗା କେଣ୍ଡିନର ଗାଖ ମୋଡ଼ରେ ଅଳିଆ ଗାଦିଟା ଛୁଡ଼ା ହୋଇଥାଏ । ଅଧ୍ୟାପକ ବୃନ୍ଦ ଦୁଧର ଛେନା ଚକ୍କା ଓ ଛେନା ପୋଡ଼ପିଠା କଥା ମନେ କରୁ କରୁ ମ୍ୟୁନିସିପାଲିଟିର ସେଇ ମଇଳା ଗାଡ଼ିରେ ବାହେଇ ହୋଇଗଲେ । ଥଳୀଗୁଡ଼ାକରୁ କଞ୍ଚାପଦ ଚଳାଚଳ ରାସ୍ତା ଉପରେ ଅଜାଡ଼ ହୋଇ ପଡ଼ିଲା । ସାଇକେଲକୁ ଷ୍ଟେଣ୍ଡ ଉପରେ ଛିଡ଼ାକରାଇ ସେ ସବୁ ଗୋଟାଇ ଗୋଟାଇ ଅଧ୍ୟାପକ ଶୁଣିଲେ ଦାରୋଗା ଓ ମେହେନ୍ତରଙ୍କ କଥାବାର୍ତ୍ତା ।

"ଏଇ, ବାବୁ, ସେଇ କାଦୁଅପାଣିଆ ଭଦ୍ରଲୋକ ନା ? କାହିଁ ତା'ର ଲୁଗାପଟାରେ ମଇଳା ପାଣି ଛିଟିକା ତ ଲାଗିନି ?"

ଦାରୋଗା ବାବୁ ଭଲ କରି ଅଧ୍ୟାପକଙ୍କ ପୋଷାକ ପତ୍ର ଦେଖିଲେ । କହିଲେ, 'ଠିକ୍ ।'

''ଲୋକଟା ବେଶ୍ ଭଦ୍ର ଦିଶୁଛି । ପାଟିରେ ତାଳା ବନ୍ଧା ମାରୁଛି ନା କଣ ? କଥା ପଦେ ପାଟିରୁ ବାହାରନ୍ତି ନାହିଁ ?''

ଦାରୋଗା ବାବୁ ପୁଣି ଆଖି ତରାଟି କହିଲେ, 'ଚୁପ୍' ।

''ବାବୁ, ତୁମେ ଏଇ ବାପୁଟାକୁ ନେଇ ହାରାମଲ ଖାନରେ ପୂଜା କରୁଥିଲ ? ସିଏ ସ୍ତ୍ରୀ ରକମ ଶନ୍ତନାଟାକୁ ରେମୁଣା ହାଟରୁ କିଣି ବାନ୍ଧିକ-ପୁରରେ ରଖ ଦେବ । ଦାରୋଗାବାବୁ ତରକ୍ତି ମେଲା ପରି ହୋଇ କହିଲେ 'ତୁମ କାମ କର' । ଅଧ୍ୟାପକ ସଦାନନ୍ଦଙ୍କୁ ଜଣାଗଲା, ସେ ଜିମିତ ନରକ ରାଜ୍ୟରେ ପହଞ୍ଚିଛନ୍ତି । ଏଇ ଦାରୋଗାଟା ତାଙ୍କ ଯମ, ଆଉ ମେଟ୍ରନଙ୍କର ଗୁଣ୍ଡାଙ୍କ ଯମଦୂତ । ବଡ଼ ନିର୍ଦ୍ଦୟ ସେମାନେ । ତାଙ୍କୁ ଶିକୁଳି କଷାରେ, ତପ୍ତ ତେଲ ଗାଡ଼ିରେ କଷ୍ଟ ଦେଇ ବି ତାଙ୍କ ମନ ମାନୁ ନାହିଁ, ଭଉଓଁଶାର ଜୋରଜବରଦସ୍ତ ସେମାନେ ତାଙ୍କ ହାତଟାକୁ ଓଟାରି ଭିତରୁ ବାହାର କରୁଛନ୍ତି ନରକ କୁଣ୍ଡରେ ବୁଡ଼ାଇବେ ବୋଲି । ସୁପ୍ତିପୁରଙ୍କ ଅଙ୍ଗୁଳିଟାକୁ ଏଇମାନେ ନରକରେ ବୁଡ଼ାଇ ପାଷାଣ କରିଥିଲେ ।

ସବୁ ଜିନିଷ ଅଳରେ ଭର୍ତ୍ତିକରି ନେଲେ ଦେଇଥିବା ଦୁଧକୁଣ୍ଡ ଫେଡ଼କଟକୁ ଅଧ୍ୟାପକ ହାତମାରି ପକେଟରେ ଅଞ୍ଜାଇଲେ । ମୁଦ୍ରାଟିକ ପରେ ଟମକ ପଡ଼ ହାତଟାକୁ ବାହାର କରିଆଣି ଅଙ୍ଗୁଳିଗୁଡ଼ାକୁ ଏପାଖ ସେପାଖ ଉପର ତଳ କରି ଦେଖିଲେ । ପାଷାଣ ନହୋଇଲେ ବି ଅନେକ ରୁକ୍ଷ ବିବର୍ଣ୍ଣ ହୋଇଗଲା ପରି ତାଙ୍କୁ ଜଣାଗଲା ।

ହୃତ୍ପୁର ରାଜ୍ୟ ଯୁଦ୍ଧ ଶେଷ ।

ହତ କିଏ ?

---

# ପାତାଳ ପ୍ରବେଶ

ଉଠାଇବ ନା ନାହିଁ—ଏଇ ହେଲା ମୋ ଦଷ୍ଟରେ ଏକ ବିଷମ ସମସ୍ୟା ।

କମିତ ନ ଉଠାଇବ ? ଏତେ ସୁନ୍ଦର ଠିକ ରହିଛି । ଗଡ଼ଧାରେ କଏ ତାକୁ କୁନ୍ଦେଇବା, କଏ ଲିଭ ପକେଇବା, ଭଏ ଛିଡ଼ି ଦେବା, ଆଉ କଏ ବା ଠିକ ପକେଇବା କରୁଛନ୍ତି । ମୁଁ କ'ଣ ଏତେ ନିଷ୍ଠୁର ! ମୋର କ'ଣ ତା ପ୍ରତି ମୋଟେ ଦରଦ ନାହିଁ ?

ଉପରୁ ଝିର ଝିର ହୋଇ ଯେଉଁ ପାଣି ଛିଟୁଛି ବର୍ଷା ଅବିରଳ, ତାର ଉପରେ ଗଡୁଥିବା ମଟରକାରର ଚକଚକିଆ ଝିଲମିଲ ପରଦାଟିଏ ତା ଉପରେ ଟାଣି ହୋଇ ଯାଉଛି । "ହାଙ୍ଗ୍ ଡ୍ରାଇ ଫ୍ରେସ୍ ଅପ୍" ! ଝିମିତ, ଧାନ ଘରର ଆଡ଼ରର ଠିକ ହିଟରି, ମାଇଲନ୍ ପ୍ରକୃତି ଠିକ ଯାଉଥିଲା, ଟେବାର୍ ଖଣ୍ଡ ପଡ଼ିଛି, ଉଠିପାରୁନି, ବିକଳ ହୋଇ ବାଟଚଲା ସମସ୍ତଙ୍କୁ ଡାକ ଦେଉଛି—'ମୋତେ ଉଠାଅ' ।

କିନ୍ତୁ କେହି ଉଠାଉନାହାନ୍ତି । ମୁଁ ଉଠାଇବି କାହିଁକି ? ସକାଳୁ ସଞ୍ଜ, ଏଇ ରାସ୍ତାରେ ହଜା ଓଳି ଧରି ପିମ୍ପୁଡ଼ି ଧାଡ଼ି ପରି ଲୋକ ଚାଲିଛନ୍ତି । ମାଛବାଲା ଦୋକାନକୁ ଗରାଖ, ସ୍କୁଲକଲେଜକୁ ଛାତ୍ରଛାତ୍ରୀ, ଡାକ୍ତରଖାନାକୁ ରୋଗୀ କେତେ ସଂଖ୍ୟାରେ ଯେ ଏଇ ବାଟ ଦେଇ ଗଲେଣି ତାର ହିସାବ ନାହିଁ । କେହି ତ ତାକୁ ଉଠାଇନାହାନ୍ତି । କେତେଜଣ ରଠା ଖରଭାରେ ଦାଗଠାଏ ତା ଗାଲରେ ବସାଇ ଦେଇଛି । ସେ ତ ତାକୁ ଦୟା ଦେଖାଇ ନାହିଁ ! ମୁଁ ପୁଣି ଠିଆ, ବାହାଦୁରିଆ ହେବି କାହିଁକି ?

କେହି କ'ଣ ତାକୁ ଦେଖି ନାହାନ୍ତି ? ମୁଁ ତେବେ କାହିଁକି ଚାହିଁବି ? ମୋର କ'ଣ ଠିକ ପରିବାର ଅଭାବ ଅଛି, ନା ଘରଜ ଅଛି ? ଶୋଇ ରହିଲେ ବି ଦେଖିଲି ଏମିତି ଦୁଇ ହଜାରରୁ ବେଶୀ ଝିଅଙ୍କ ରୂପରଙ୍ଗ ନେଇ ମୋ ଘର ଭିତରେ ଯା ଆସ କରୁଛନ୍ତି ।

ତଥାପି ଏଇଟି ହିଁ ମୋର ଏତେ ମମତା ଭାବିବା ଆସୁଛି ? ଅନେକ ଦିନ ହେଲା ଦେଖିନାହିଁ କାହିଁକି ? ଜଣାପଡ଼ୁଛି, ଝିଅଟି ଲୁଚିଛପି ଏକମାତ୍ର ପଳାଇ ଆସିଛି ମା' ପାଖରୁ । ବୟସରେ ଠିକ ମୁହଁଟି ବଡ଼ ମାଙ୍କର, ଚେହେରା ବଢ଼ିଛି । କେତେ କରୁଣ ଆଖିରେ ଚାହୁଁଛି ମୋ ଆଡ଼କୁ, ଯିମିତି ସେ ମୋର କେବେ ଥିଲା ଅତି ଆପଣାର ।

ଉଠାଇବ ତେବେ ? କେହି କହିବେ ନାହିଁ ତ ମୁଁ କିଡ଼୍ନେପ୍ କଲି ବୋଲି ? ରେପ୍ କଲି ବୋଲି ?

ଥାଉ, ପଡ଼ି ଥାଉ । ଅନାବନ୍ଧ ଘାସ, ଅନ୍ଧାରିଆ ପୃଷ୍ଠାଟିଏ ହୋଇ ଯାଉ, ପଳାଇଯାଉ ନହେଲେ ତା ଆଡ଼କୁ ଟାଣି ହୋଇଯିବ ।

କିନ୍ତୁ ଖାଲିକେଲି ସୁନ୍ଦରୀ ପିଲାଟିଏ ନାହିଁ ସେ ! ହେଇ ମୋ ଆଡ଼କୁ ସେ ପୁଣି ଆଖିଠାରୁଛି ।

ଆଚ୍ଛା, ଲୋକଗୁଡ଼ାକ ମୋ ଆଡ଼କୁ ଚାହୁଁନାହାନ୍ତି କାହିଁକି ? ତା ହେଲେ ତାଙ୍କ ଉପରେ ସ୍ପଞ୍ଜ ଆଉ ନଜର ନଦେଇ ଚାଲିଯାଆନ୍ତୁ ସିଧା ଘରକୁ।

ଚାହିଁଲି ଚାରିଆଡ଼କୁ । ପାଖ ଘରର ଝିଅଟିଏ ଝରକାର ମୁହଁରେ ଖେଳ ଖେଳ କଲମ୍ପାଣି କମିତି ପୁରାଉଛି, ସେଇ ଝିଅଟିକୁ ଚାହିଁ ରହିଛି ପାନବାଲା । ଗୁଡ଼ାଖୁବାଲା ଓଜନଥାକ ପାଖରେ ଧୂପ ଦେଇ ହାତଯୋଡ଼ି ଆଖିବୁଜି ଧ୍ୟାନ କରୁଛି । ପରିବାବାଲା ପୁରୁଣା-ଦୁଇପଇସା ହାମର ବଡ଼ାକୁ ବଡ଼ା କୋଶଳା ଶାଗ ବାନ୍ଧି ଯାଉଛି । ଉଠାଇବ ?

ଉଠାଇବାର ଲୋଭ ସମ୍ବରଣ କରିନେଲି । କିନ୍ତୁ ଭାବିଲି, ଯଦି ସ୍ୱାମୀଙ୍କୁ କେହି ନ ଉଠାଇବେ, ତେବେ ଏଇଠି ପିନା ପଡ଼ ଗୋଡ଼ ଧୂଳ ପିବ । ଦୁନିଆଁକୁ ତେବେ ସେ ଆସିଲା କାହିଁକି ? ଏଠିଁ ରହେ କାହିଁକି ? ଏତେ ଅର୍ଥହୀନ, ମୂଲ୍ୟହୀନ, ଉଦ୍ଦେଶ୍ୟହୀନ କ'ଣ ତା'ର ଟିକେ ଜୀବନଟି ?

ପାଞ୍ଚସୂକ ଚେନ ଅଥବା ଟଙ୍କାକିଆ ନୋଟଟାଏ ଗୁଡ଼ି ପକେଟରୁ ପଡ଼ିଗଲେ ବୋଧହୁଏ । ନଇଁପଡ଼ିଲି । ଆଙ୍ଗୁଳିକାରେ ଉଠାଇ ଆଣିଲି । ଚିହ୍ନିଥା ?

ଟିକ ପଇସାକୁ ଉଠାଇ ନାହିଁ ତ ? ଅଙ୍ଗୁଳରେ ଧୂଳ ମଳ ଅସିବ କୁଆଡୁ ? ତଳକୁ ଚାହିଁ ଦେଖିଲି, ଟିକ ପଇଯାଇଟି ନାହିଁ । କିଏ ଉଠାଇ ନେଇଛି ।

କିନ୍ତୁ ଭଲ କ'ଣ ? ଭୁଲ ହେଲା, ମସ୍ତବଡ଼ ଭୁଲ । ଛେଇ, ଛେଇ । ବର୍ତ୍ତମାନରେ ? ଏ ମୋ ନିଜ ଚଲ ମୁଣ୍ଡି । ପାଇଲି ବୋଲି କ'ଣ ମୋର ହୋଇଗଲା ?

କାଲି ହୁଏ ତ ମୋର ଥିଲା । ସଞ୍ଜବେଳେ ଏଇଠି ତ ସେ ଦାନ୍ତକାଠିବାଲି ବୁଢ଼ୀଟା ବସିଥିଲା ତା ନାକୁଣୀ ପାଙ୍ଗରେ । ବାଟରେ ବାପ୍ ! ନାକୁଣୀ ଝଲ୍ଲେ ତ ' କୋଣାର୍କର ମୂର୍ତ୍ତି ପଥରର ମୂର୍ତ୍ତି ପରି ତାର ରଙ୍ଗ, ଗଢ଼ଣ ! ମୁହଁଟି ଟିକ ପଇସା ଏରି ଗୋଲ, ଅଖି ଦୁଟା ଦାଣ୍ଡି ଆଖିରେ ସେଇ ଟିକ ପଇସାର ଚକଚକ ଚମ୍ପାଳିଆ ।

ଧୂଳ ବଣ୍ଡା ଶାଳ କାଠ କଣ ବୁଢ଼ୀକୁ ଦୁଇଟା ଦୋପଇସି ଦୁଇଟା ଓ ଦୁଇଟି କିଛି ପଇସା କ'ଣ ଦେଇ ନଥିବ ? ବୁଢ଼ୀ ଅଗରୁବତ୍ତିର ମୁଠାକୁ କାଠି ବଣ୍ଡାଏ କରୁଥିଲା । ଏବେ ବୁଢ଼ାକ ମହର୍ଷିଲୁ ତେଣ ସାନ ସାନ ବଣ୍ଡା ବାନ୍ଧ ପଇସେ ପଇସେ ଦାମ୍ କରିଛୁ । ପୁରୁଣା ପଇସା । ମୋ ଦୁନିଆ ପିନା ମିଳନ୍ତକୁ ହଜାର ହଜାର ମିଟାର୍ ଗଜରେ ବୁଲୁଛୁ, ମୋପାଇଁ ଧାଟକୁଦ ପାଣି ମିଳନ୍ତକୁ ଲକ୍ଷ ଲକ୍ଷ କ୍ୟୁସେକରେ ବହି ବୁଲୁଛୁ କିନ୍ତୁ ବୁଢ଼ୀର ରଜାମୁଣ୍ଡି ଟଙ୍କା ବା ହନୁମାନ ପଇସାର ମୂଲ୍ୟ କ'ଣ ଜାଣିଛି ?

ବଜାର ହେବକୁ ଘଣ୍ଟେ ବାକିଅଛି, ହାଟୁଆ ବଜାରିଆ ସବୁ କ'ଣ କମ୍ ଠକ ? ନାତୁଣୀ ଗୋଟାଏ ନୂଆ ଟୋପଇପିକୁ କହି ପଇସାଟିଏ ନେଇ ଦୁଇଥର କରି ବୁଝାସୁଝା କରିବାରୁ ଯାଇ ବୁଢ଼ୀ ହିସାବ ବୁଝିଲା ।

ନାତୁଣୀ ହାତରୁ ପଇସା ନେଲାବେଳେ ଏଇ ଟିକିପଇସାଟି ବୁଢ଼ୀର ଶୁଖିଲା ଅଙ୍ଗୁଳି ସନ୍ଧି ଦେଇ ହୁଏତ ଖସି ପଡ଼ିଥିବ । ନ ହେଲେ ଅନ୍ଧ ଥରେ ଭଲକରି ଦେଖୁଁ ଦେଖୁଁ ତା ହାତରୁ ଅଜାଣତରେ ପଡ଼ି ଯାଇଥିବ । ମାତ୍ର ଅନ୍ଧାରରେ ହୁଏତ ଅନ୍ଧାରକାଣୀକୁ ଦିଶି ନଥିବ ।

ଆଜି ସକାଳେ ଗାଁରେ ଯେତେବେଳେ ହିସାବ ହେଉଥିବେ ହୁଏତ ପଇସାଟିଏ ଉଣା ପଡ଼ିଥିବ । ବୁଢ଼ୀ ଓ ନାତୁଣୀ ଖୋଜି ଲାଗିଥିବେ; ନ ହେଲେ ପୁଅ ବା ନାତି ବୁଢ଼ୀକୁ ଖୁବ୍ ଗାଳିଗୁଲଜ କରୁଥିବେ । ଅନ୍ଧାରୁଆ ଘଞ୍ଚ ଜଙ୍ଗଲରୁ ବାଘ ଭାଲୁ ମୁହଁରୁ ଯେଉଁ କାଠି ପତ୍ର ଆସେ ତାର ଦାମରୁ ପଇସାଟିଏ କମ ହେଲେ ଖାଇବାକୁ ବା ନ ବାଧିବ ?

ସେଇ ଟିକି ପଇସାଟି ବର୍ତ୍ତମାନ ମୋ'ହାତରେ ଫିଙ୍ଗି ଦେବି ?

ପାଇବାର ପାପ ଯେ କହିନାହିଁ । ପିଲାଦିନେ ମା' କହୁଥିଲା, "ଲୁହା ପାଇଲେ ଭଲ ହୋଇ, ଦାନ ଧ୍ୟାନ କରିବା ଦରକାର । କିନ୍ତୁ ତମ୍ବା, ରୁପା ବା ସୁନା ପାଇଲେ ଦୁଇଗୁଣ କରି କାହାକୁ ଦେଇଦେଲେ ପାପ କ୍ଷୟ ହୋଇଯାଏ ।"

ବେଶ୍ କଥା । ଟିକି ପଇସା ଲୁହା ବୋଧହୁଏ ନୁହେଁ, ତମ୍ବା ପରି ତ ଦିଶୁଛି; ଟୋପଇଟିଏ ତା ସଙ୍ଗରେ ମିଶାଇ କାହାକୁ ଦେଇ ଦେଲେ ତ ସରିଲା ।

ପକେଟ୍‌ରେ ହାତ ମାରିଲି । କ୍ଲିପ୍, ରୁମାଲ, ଦିଆସିଲି, ଲବଙ୍ଗ, ଶୁଖିଲା ପାନଗିଲର ଗୁଅ ଟୁକୁରା—ଟୋପଇଟି କାହିଁ ?

ଇଏ ବି ଏକରକମ ଭଲ । ଦୋପଇସି ମିତ୍ରମାନେ ଠିକଦେଇଥା ପଛରେ କୋଣଲା ଶାଗ ବଡ଼ିଏ କିଣିବାକୁ ମନ କଲଥାନ୍ତା । ଘଣ୍ଟା ଲେଖାର ଦାଉରୁ ରକ୍ଷା ମିଳନ୍ତା । ଗୋଟିଏ ପାଟି ଉପରେ ଆଉ ଏକ ଚାପର ବୋଝ ସମ୍ଭାଳିବାକୁ ପଡ଼ନ୍ତା ନାହିଁ ।

ତେବେ ଯାହାକୁ ଇଚ୍ଛା ତାକୁ କେବଳ ଏଇ ଠିକ ଦେଇଦାକି ଦେଇ ଖୁଲାସା । ବହୁତ ଡେରି ହେଲାଣି । ପିଲାଙ୍କ ସ୍କୁଲ ବେଳ ହୋଇଯିବ ।

କିନ୍ତୁ କାହାକୁ ଦେବ ? ସମସ୍ତେ ତ ଅବୀ ଭରପୂର କରି ବୁଲୁଛନ୍ତି । ଠିକ ଦେଇବା ନେବା ଭଳି କାହାର ଚେହେରା ତ ଦିଶୁନାହିଁ

"ଦେବସ୍ୱ ଗ୍ରହିଲ ନାମ……" ନାମାବଳି ଟେକାଇ ପଞ୍ଜାରେ ବାହାରିଛନ୍ତି ପରମ ବୈଷ୍ଣବ ଜଣେ । ଏଇ ତ ଉପଯୁକ୍ତ ପାତ୍ର ମିଳିଗଲେ । ସ୍ୱାଙ୍କର ହାତରେ ନିଷ୍ପତ୍ତି କରି ସୁଖୀ ହେବି ।

"ନିଅ ଧର" । ଠିକଦେଇଥାଟି ହାତରେ ଏମିତି ଚେକା ଧରିଲି, ଯେମିତି ପଛପାଖରେ ଥିବା ଇଂରେଜ ଏକ ଘଣ୍ଟାଟି ପକ୍ଷମବଙ୍ଗ ଚଲି ଦାଉ ଦାଉ ଜଳି ଉଠିଲା !

"ବଇନା କହୁନ୍ତି ବାବୁ ତୁମେ । ମହାପୁଣ୍ୟମାନ । ଅତଏବ ଦୋପଇସିଟିଏ ଦାନ କର ବୈଷ୍ଣବକୁ ।"

"ମୁଁ ତ ସେଇ ଦୋପଇସିଟିଏ ଖୋଜି ବୁଲୁଛି, ତାଇଲେ ଦାପୁ ମୁକ୍ତ ହୁଅନ୍ତ । ପାଉନାହିଁ ବୋଲି ତ ତୁମକୁ ଏଇଟି ଦେଉଛୁ ।" ସିଧା ସଚ କଥାଟି କହିଦେଲି, ମିଛ କହୁ ନେଉ ତୁଆ ତାପ ଟିକିଏ କାହିଁକି ?

ବୈଷ୍ଣବ ଭକ୍ତ ହାତ ଫେରାଇ ନେଲେ । ମୁଁ ବି ହାତ ଓ ଠିକ ଦେଇଥା ଫେରାଇ ଆଣିଲି ।

ଯୋଡାଏ ଘୋଡ଼ା ଗାଡ଼ି ପଞ୍ଚାଶିଟିକୁ ଓଭରଟେକ କରି ବାଙ୍କରେ ମୋଡ଼ି ଘଣ୍ଟେବେଳେ ଚୌରାଶୀ ବାଡ଼ି ଖଣ୍ଡିରେ ଧରି ବନ୍ଧପାଖକୁ, ନେଇଗଲି ଓ ଏତେ ବେଶୀ ସଫା କରି ଧୋଇ ଦେଲି ଯେ ତା' ପୂର୍ବ ରଙ୍ଗ ବ ରହିଲା ନାହିଁ ।

ଯୋଡା ଘୋଡ଼ାରେ ଦେଇ ଦେଇ ବୁଲପଡ଼ ଦେଖିବ, ଚାଉଁଦେଇ ଥୁବୁଥୁରୁଆ ବୁଢ଼ୀଟିଏ ଯାଉଛି । ଅଣ୍ଟାରେ କେଉଁ ଦଶା ଧରିଛି ଜଣା ପାଉଛି—ଝିକ୍ ଝିକ୍ ଝରଣା ପରି । ଛଅ ସାତବର୍ଷର ପିଲାଟିଏ ତା' ହାତ ଧରି ବାଟ କଢ଼ାଉଛି ।

"ନେ ଧର"—ବୁଢ଼ୀ ଆଡ଼କୁ ହାତ ଟେକି କହିଲି । ଦୃଢ଼ ଧାରଣା, ଏଥର ଦାୟମୁକ୍ତ ହେବି ।

କିନ୍ତୁ ବୁଢ଼ୀ ଏମିତି ବ୍ୟାଙ୍ଗଚାହାଁଟାଏ ଦେଲା ଯାହାର ସ୍ପଷ୍ଟ ଅର୍ଥ— "ମୋତେ କ'ଣ ସତ ଭିକାରୀ ପାଇଲୁ କି ?"

ତେବେ ଯୋଗକୁ ଦେଖି ପିଲାଟି ତା' ଠିକ୍ ହାତଟି ପାତିଦେଲା । ମୋତେ ହାତ ଫେରାଇବାକୁ ପଡ଼ିଲା ନାହିଁ । କ'ଣ ନେଲା ବୁଝିଲା କି ନାହିଁ ପିଲାଟି ହାତମୁଠା ବନ୍ଦ କରିଦେଲା । ଚାଲିଗଲେ । କନ୍ୟାଦାୟଗ୍ରସ୍ତ ପିତା କନ୍ୟାଦାନ ପରେ ଯେମିତି ଆଶ୍ୱସ୍ତ ଓ ଋଣମୁକ୍ତ ହୁଏ, ମୋର ଗୁଣ୍ଡି ମୁଣ୍ଡ ସେମିତି ହାଲୁକା ଲାଗିଲା ।

ସାଇକେଲ ବୁଲେଇ ଷଣ୍ଡ କରି ଫେରାଇଲି । କିନ୍ତୁ ଏ କଣ ? ପିଲାଟି ଯେ ଫେରିଆସୁଛି । ଥର ଥର କାନ୍ଦ କାନ୍ଦ ହୋଇ କହୁଛି—"ବାବୁ ଆଈ ରାଗିଲା, ଗାଳିଦେଲା, ମାରିବ କହୁଛି, ନିଅ ବାବୁ—

ଶାଗଛଡ଼ାଟି ହାତରେ ଧରି ବୁଢ଼ୀ ମୋତେ ଶୁଣାଇ ଶୁଣାଇ କହୁଛି, "ନାଁ ବୁଡ଼େଇବ ଏ ପିଲା, ଧାନ ଭାହା ଆଗରେ ହାତ ପାତିବ । ମରିଗଲା, ଧାର ଉଧାର କରିନି । ଆଉ ଏ ଛତର—ରଙ୍ଗ ଦେଖି ଭୋଳେ ଦଉଛି । ଲାଜ ମାଡ଼ୁନି, ଗୋଟେ ବଡ଼ି ପଇସା ପାଇଁ ଜୀବନ ଛାଡ଼ି ଯାଉଛି ।

ସୁନ୍ ଘରକୁ ସୁନ୍, ଗରିବ ପଇସାବାଲା ଦେଖେଇ ହଉଛୁ ।'' ଶେଷ ପଦଟା ମୋ ପାଇଁ । ବୁଢୀର କଥା ସରିବା ପୂର୍ବରୁ ମୁଁ ପଇସାଟି ପିଲଟି ହାତରୁ ଆଣି ସାରିଥାଏ । ଏଇ ପଇସା ପାଇଁ ସେ ଗାଳି ଶୁଣିଲାଣି, ମାଡ଼ ବି ଖାଇପାରେ ।

ପଇସାଟି ଯେତେବେଳେ ପକେଟରେ ପୂରାଇଲି, କାହିଁକି କେଜାଣି ମନରେ ଭୟସଞ୍ଚାର ହେଲା । ପାଖ ଛକର ଟ୍ରାଫିକ୍ ପୋଲିସ୍‌ଟା ବୋଧହୁଏ ମୋ ପ୍ରତି ସନ୍ଦେହ କଲାଣି । ନ ହେଲେ ମୋ ଆଡକୁ ଏମିତି କଟମଟ କରି ଚାହିଁ ରହୁଛି କାହିଁକି ? ଦୁନିଆଁ ସାରା ସମସ୍ତେ ଯେମିତି ଚାହିଁଛନ୍ତି ସନ୍ଦେହରେ ମୋ ସେଇ ପକେଟ ଆଡକୁ, ହାତ ଆଡକୁ, ମୁହଁକୁ ।

ଫୋପାଡି ଦେଲେ ହୁଏତ ରକ୍ଷା ପାଆନ୍ତି । କିନ୍ତୁ ସମସ୍ତେ ଚାହିଁ ରହିଛନ୍ତି ଯେ ! ପକେଟରେ କାହିଁ କଣାଟାଏ ଥାଆନ୍ତା ଭଲା !

ସାଇକେଲରେ ଚଢ଼ିବାକୁ ସାହସ ହେଉ ନାହିଁ, ପଡ଼ିଯିବା 'ଭଳି' ଲାଗୁଥାଏ । ଚଲାଇ ଚଲାଇ ଷ୍ଟେସନ୍ ଦୂର ଗଲା ପରେ ଭାବିଲି, ଏ ପଇସାଟିକୁ ଧରି ଦୁନିଆଁ ବୁଲିଲେ ବି କାହାକୁ ଦେଇ ପାରିବି ନାହିଁ ।

ତେବେ ସେ ବୃଦ୍ଧା ଏମିତି ଟିକେ ପଇସାଟିକୁ ଆଦର କରୁଥିଲା କାହିଁକି ? ଷ୍ଟେସନରେ ଗାଡ଼ି ପହଞ୍ଚିଲେ ଝରକା ପାଖରେ ଛିଣ୍ଡାହୋଇ ମୁଣ୍ଡଟା ବାହାରକରେ । ଚଷମା ଭିତରୁ ଜୁଳୁ ଜୁଳୁ ଆଖିଟା ଦେଖାଇ ହାତ ପାତି ମାଗେ । କୁହେ, ''ମୋର ଟଙ୍କା ଅଧୁଲି ଦରକାର ନାହିଁ, ମୋତେ ଅଧଲା ପାହୁଲା, ଛଦାମ ଦିଅ'' କଟକ ଷ୍ଟେସନରେ ତିରିଶ ବର୍ଷ ତଳେ ତା' ହାତରେ ଦ'ଶକୋଟି ଅଧଲା ପାହୁଲା ଦେଇଥିଲି ଯେ, ସେ ତା ଲମ୍ବା ହାତଟା ଟିକିଧାରେ ମୋ ଆଡ଼କୁ ବଢ଼େଇ ଦେଇଥିଲା । ମୁଁ କେତେ ହମେସ୍ ଧରି କାଳରୁ ପାରୁନି ପାଏ ନ ପହଁଚିଛି ! ସେ କେତେ ଖୁସି ହୋଇ ନଥିଲା ସେଦିନ ! ମୁଁ କେତେ ଧନ୍ୟ ନ ହୋଇଥିଲି ? ଆଜିକାଲି ସିମିତି କେହି ଏ ସାନ ସାନ ଜିନିଷର ଆଦର କରୁ ନାହାନ୍ତି କାହିଁକି ?

ଢଂ ଢଂ କରି ଲିଙ୍ଗେଶ୍ୱର ମନ୍ଦିରରେ ଘଣ୍ଟା ବାଜି ଉଠିଲା ।

ଇଏ ତ ଆଜି ଜଣେ ରାଜାର ଗର୍ଭ । ସିଏ ଯେମିତି ମଣିଷ ଭିତରେ ବଡ଼ ଇଏ ତ ସିମିତି ଦେବତା ଉପରେ ଦେବତା । ସିଏ ସିମିତି କାଙ୍ଗାଳଙ୍କ କାଙ୍ଗାଳ, ଇଏ ସିମିତି ଲକ୍ଷ୍ମୀଙ୍କ ଲକ୍ଷ୍ମୀ । ସ୍ୱାମୀ ବଡ଼ କିଏ ? ଘର ନାହିଁ, ଦ୍ୱାର ନାହିଁ, ମଶାଣିରେ ରହେ, ଦେହେଠା ଯାକ ପାଉଁଶ ବୋଳି ହୁଏ, ଧୂତୁରା କୁକୁଣ୍ଡା ଫୁଲ ଭଲପାଏ, ଷଣ୍ଢ ହିଁ ସିଏ ଚଢ଼ିକାର ଗୁଣ୍ଡଲେ । କେହି ନ ନେବା ଚିଜ ତା' ହିଏ । ଚମ୍ପିଗଲି ଏକା ନିଃଶ୍ୱାସରେ ମନ୍ଦିର ଭିତରେ । ମୋତେ ଜଣାଯାଉଥାଏ, ଗୁଡ଼ାଏ ଲୋକ ମୋ ପଛରେ ଧାଇଁଛନ୍ତି ଖେଳର ପଛରେ ଗୋଡ଼ାଇଲା ପରି । ମୋର ଅନ୍ତରପୁ କାନ୍ଦୁଥା ।

ମନ୍ଦିରର ମାର୍ବଲ ଚଟାଣରେ ଲମ୍ବତମ୍ବ ହୋଇ ପଡ଼ିଗଲି ।

ନିଃଶ୍ୱାସ ଫେରିଲା, ପ୍ରଶ୍ୱାସ ଓ ଭରସା ବି ଆସିଲା । ଭିତରକୁ ଭୋକ୍ତା କରପତ୍ର ଯୋଡ଼ି ଲିଙ୍ଗେଶ୍ୱରଙ୍କୁ ଜଣାଇଲି;—“ପ୍ରଭୋ ! ମର୍ତ୍ତ୍ୟରେ ବା ସ୍ୱର୍ଗରେ ମଣିଷ ବା ଦେବତା ଯାହା ବ୍ୟକ୍ତି ନାହିଁ ଯେମିତି ଅନନ୍ତ ତାଙ୍କ ତୁମେ ଆଦର କର । ମୋ ହାତରୁ ଏ ଝିଅ ଲେଉଟି ନେଇ ମୋତେ ଏ ଯନ୍ତ୍ରଣାରୁ ଉଦ୍ଧାର କର, ପରିତ୍ରାଣ କର ପ୍ରଭୋ ! ସ୍ୱାମୀ ଦୁନିଆରେ କେହି ନେଇ ନାହାନ୍ତି ।”

ଏତିକି ବେଳେ ପୂଜାରୀ ମେଘମନ୍ଦ୍ର ସ୍ୱରରେ ‘ଓଁ ନମଃ ଶିବାୟ’ କହି ଆରମ୍ଭ କଲା ମହିମ୍ନ ସ୍ତବ, “ମହିମ୍ନ ପାରଂତେ”।

ମନ୍ଦିର ଦେହରେ ସେ ଶବ୍ଦ ଝଙ୍କାର ପ୍ରତିଧ୍ୱନିତ ହୋଇ ସିମିତି ମୋର ପ୍ରାର୍ଥନାର ଜବାବ୍ ଦେଲା—“ଭକ୍ତ ମାନବ ! ଉତ୍କଳର ଗୋଟାଏ ସୀମା ଅଛି । ତ୍ୟାଗ ଓ ସେବାର ଆଦର୍ଶ ଦେଖାଇବା ପାଇଁ ତୋର ବ୍ୟସନ କ୍ଷେତ୍ର ସମ୍ଭୋଗ ସବୁ ଛାଡ଼ି ଦେ, ତୁଚ୍ଛ ପଦାର୍ଥକୁ ବରି ନେଇଛୁ ବୋଲି ଧାଇଁ ଆସିଛୁ ମୋ ପାଖକୁ ? କଳିଯୁଗରେ ତୋର ଅର୍ଜିତ ଦୁରବସ୍ଥା ଦେଖି ଆମେ ଜଗନ୍ନାଥ ତିନି ପୁରୁଷ ଉଦ୍ଧାରେ ପୂଜାର ବ୍ୟବସ୍ଥା ଦେଇଥିଲୁ । ସେତେବେଳେ ଉଇପାଟିକର ଚଣ୍ଡାଳରେ ଆମ ତିନିଙ୍କୁ ନିଶା

ଲାଗୁଥିଲା । କେତେବେଳୁ ତ ତୁ କୃଷ୍ଣା ସୁନ୍ଦରୀ ହେଉଥିଲୁ, ସତ୍ୟଯୁଗ । ପୁଣି ଆସିଛୁ ଟିକି ପଇସା ଦେଇ ଭୁଲାଇବାକୁ ? ଯା, ଯା, ଦୂର ହ !"

ମୁହଁରଣ୍ଟା କମିଲା ସେମିତି ବଡ଼େଶ୍ୱରଙ୍କ କ୍ରୋଧରେ । ମୁଁ ଥରିଲି, ମୋର ହାତ ଖସିଗଲା । ଟିକି ପଇସା ବି ଥର ଥର ହଠାତ୍ ହାତରୁ ତଳକୁ ଖସି ପଡ଼ିଲା ।

ଠିଂ ଠିଂ । ଭଉଁରୀ ଲେଉଟି ଚୂଡ଼ି ଚୂଡ଼ି ହୋଇ ଘୁରିବାର ଶବ୍ଦ ପରି ମୋତେ ଜଣାଗଲା ।

ଟିକି ସୀତା କ'ଣ କହିଲେ, "ମା ବସୁଧା, ମୋତେ ଜନତା ରଖିଲେ ନାହିଁ, ସ୍ୱାମୀ ବି ରଖିଲେ ନାହିଁ, ତୁ ମୋତେ କୋଳରେ ସ୍ଥାନ ଦେ" । ବସୁଧା କ'ଣ ସତରେ ଏ ଯୁଗରେ ବି ଉପସ୍ଥିତ ହେଲା ?

ଦୁକାନର ଗୁରୁ ହେଉଥିବା ଅନେକ ଲୋକ, ଖୋଜା ଖୋଜି କଲେ ଟିକି ପଇସାଟିକୁ, ପାଇଲେ ନାହିଁ । କହିଲେ, "ବାବୁ; ଆପଣ କ'ଣ ସ୍ୱପ୍ନ ମନରେ ବାବାଙ୍କୁ ପଇସାଟି ଦେଉ ନଥିଲେ ? ଯେଉଁଠି ଶିବଲିଙ୍ଗ ଶକ୍ତି ହେଉଛନ୍ତି ସେଇଠି ନଥିଲା ପାତାଳକୁ ଛିଦ୍ର; ବୋଧ ହୁଏ ତାର ଭିତରେ ଆପଣଙ୍କ ଟିକି ପଇସାଟି ଅନ୍ତର୍ଦ୍ଧାନ ହୋଇଗଲା । ବଡ଼େଶ୍ୱର ପ୍ରତ୍ୟକ୍ଷ ଦେବତା, ପାତାଳରୁ ବାହାରିଛନ୍ତି ସେ !"

---

ଗଦାରେ ପଡ଼ିଛି । ସବୁ ଆଳୁ ଭିତରେ କାଳୁ ନଛନାଗାଳ ରଜା । କେତେ ଚକ୍ରଣ, ସଫା, ଅଣ୍ଡାଳିଆ, ଗିମିଣ୍ଡ ଧଳା ଶାଳଗ୍ରାମ । କେତେ ଧୂଳିମାଟି, ପଚା ଜମୋଷ୍ଟରେ ବଡ଼ି ସୁଘା ତା ମାଆ ଗୁଡ଼ ଜୋପ୍ ଦେଇ ଛୁଆମାନଙ୍କୁ କେତେ ହୃଷ୍ଟପୁଷ୍ଟ ନ କରିଛି । ଆଉ ଟେରିଲିନ୍ ପିନ୍ଧାଙ୍କ ଅଫାଦୂତୁବ୍ କରି ସୂର୍ଯ୍ୟକିରଣରେ ବୁଲିବାକୁ ଟୁଙ୍ଗ ଦେଇଛି ! ଦେଖିଲେ ପିଲେ ଏକ୍କା ସାଧୁ ବ ପିଲାଏଳୁର ପାଳିଟି ସିବ । ଦେଖିଲ ନଛନିଡାଳ ଛୋଟା ଘାଲେ ଭାଙ୍ଗିଯାଇଛି ଏବଂ ଅଳୁସୂତ୍ତାଳ ଇତସ୍ତତଃ ଭଙ୍ଗୀ ହୋଇ ପଡ଼ିଛି ।

କୃଷ୍ଣ କାହିଁ ? ଦୋକାନଘରକୁ ଚଳେ କୁଆଡ଼େ ? କେଉଁଠି ପାହେରେ ନିଆଁ ଲଗିଥିବ ବା ଆଉ କିଛି ଦୁର୍ଘଟଣା ଘଟିଥିବ ଅନୁମାନ କରି ଉତ୍ତର ପୂର୍ବ ଦୁଆର ଦେଇ ଦେଖାନ୍ତ ଥିବା ମଳଆତ୍ତକୁ ବାହାରିଲେ । ଦେଖିଲ ଗୁଡ଼ାଏ ଲୋକ ସେଇଠି ଜମାହୋଇଛନ୍ତି ଓ ହଇଚଇ ହେଉ ଛଡ ଶୁଭୁଛି "ବାଡ଼ା, ଆଟ୍ରୁର ହଜାର ବାଡ଼ା"; "ମାର୍ ଟୋ ଛଅନେ "ମେରେ ପେଟମେ" । କିଏ କହୁଛି, "ମୋର ଝୁଡ଼ିଳ ଖାଇଛି," ଆଉ କିଏ କହୁଛି, "ମୋର ଝିଙ୍କାଏ ଶାଗ ଖାଇଗଲେ ।" ଆଉ କେହି ବା କହୁଛି, "ସ୍ତ୍ରୀ ହାବୁଡ଼ରୁ ବାଇଗଣ ବି ରକ୍ଷା ପାଇବ ନାହିଁ । ଗୋଡ଼ରୁ ବାନ୍ଧି ସେଇଠି ପକାଇ ଦିଅ ।" "ବେଶୀ ବୁଲନ୍ତିଆ ହୋଇଛି ।" "ବଢ଼ କମିନ୍ତ ଗୋଲମାଲ କରୁଛି, ବେଖୁନ ।" ସେଇ ସବୁ କଥାଭିତରୁ ଶୁଭିଲା, "ମାଲିକେଟା ଖୁବ୍ ଦୁଷ୍ଟ ପ୍ରକାର ଅଛି, ଚାଲିଗ ଅଛି ।" ଟିକିଏ ଆଗେଇ ଯାଇ ଦେଖିଲ ସବୁ ଦୋକାନ ସେଇଠି ।

ଠେଲାପେଲି ଭିଡ଼ ଭିତରକୁ ପଶିଯାଇ ଯାହା ଦେଖିଲ ତାହା ଏକ ବିରଳ ଅଭୁତ ଦୃଶ୍ୟ । ମୋ ଅଳୁ ଦୋକାନ କୃଷ୍ଣ ଏ ଦୃଶ୍ୟର ନାୟକ ଏବଂ ତାକୁ ଏ ରୂପ ଦେଇଛି ବର୍ଷିଆଁ ଗୁଡ଼ାଏ ମାଡ଼ । କୃଷ୍ଣର ଆଜି ବୃଷାସୁର ଦଳନ ବେଶ । ତା'ର ଜମରୁ ଟେଣ୍ଟେଇ ଭୂଚଗୁଡ଼ା ଠିଆ ହୋଇଛି । ଆଖିରୁ ତା'ର ଚିଙ୍ଗିଣି ନିଆଁ ବାହାରୁଛି । ନାକପୁଡ଼ାର ରିଁରିଁ ଶବ୍ଦ ସହିତ ତା'ର ହୁଂକାର ମିଶିଯାଉଛି । ବାଁ ହାତରେ ଟେଣ୍ଟୁ ଛୁଆଟାର ଗୋଟାଏ ପଛଗୋଡ଼ କୃଷ୍ଣ ଧରି ଉଞ୍ଚା ପାଉଛି, "ଦେଖ, ବଳଦଟାଏ

ଆଣ ଶୀଘ୍ର, ଅଣ୍ଡା କରି ଦେଉଛୁ ଅଛ..।" ତାହାଣ ହାତରେ ତେଣ୍ଟେ ଭୂପୃଷ୍ଠପୂର ବଧାର୍ଦ୍ଧପୂର୍ଣ୍ଣ ପ୍ରଚଣ୍ଡ ଜୋରରେ ଚଢ଼ାଇ ଦେଉଛୁ । ମାଡ଼; ଜୋରରେ ବାହୁସଟା ଆଗକୁ ଯାଉଛି ସିନା କିନ୍ତୁ ପଛ ଗୋଡ଼ଟା କୁକୁରର ଟାଙ୍ଗୁଡ଼ାରୁ ବାହାର କରି ନ ପାରି ଉଲଟି ପଛ ଅଡ଼କୁ ଘୋଷାରି ହୋଇ ଯାଉଛି ଓ ଗିଁ ଗିଁ ହେଉଟାଏ ସବୁବେଳେ ତା ପାଟିରୁ ଫେଣ-ଫୋଟକା ସହିତ ବାହାରୁଛି । କେତେବେଳେ ବେକଟା ହାତେ ଖଣ୍ଡେ ଲମ୍ବି ଯାଉଛି ତ ଆଉ କେତେବେଳେ ଛୋଟା ପାଟିରୁ ଟୋଁ ଟାଏଁ କରୁଛି ଗୁଟାଏ ଷଣ୍ଡିପାଏଁ ବାହାରି ପଡ଼ୁଛି । କୁକୁରର ରୁଦ୍ରମୂର୍ତ୍ତି ତେଣେ ଦେଖେ କିଏ ? ବର୍ଷ ବର୍ଷ ଧରି ମହଣ ମହଣ ଲୁଣ ଲୁଣ ଅନ୍ନ ଓଜନ କରି ବାହୁ ଓ ହାତ ମୁଠାରେ ଯେତେ ବଳ ସଞ୍ଚୟ କରିଛି ତା'ର ସବୁ ଶେଷ ପ୍ରୟୋଗ କରୁଛି ଯିମିତ ଛାଏ କିଣିଆ ବାହୁସ ନୁହେଁ ହେଲେ ଦେଖର ଗୋଟାଏ ଦୁର୍ଦ୍ଦାନ୍ତ ଲଢ଼ୁଆ ଷଣ୍ଢ ଓ ସେ ନିଜେ ଜଣେ ବୀର ସେନାନୀ ହୋଇଛି ।

କୁକୁର ଖଣ୍ଡିଆ ଦେଖି ଦୋକାନୀ ଓ ଅନ୍ୟମାନଙ୍କୁ ପଚାରି ଜାଣିଲି ଯେ, ପ୍ରାୟ ଅଧଘଣ୍ଟେ ଉପରେ ନଇଁପଡ଼ିଲା ଅସ୍ଥିଟାଏ ବାହୁସଁ କୁକୁର ଦୋକାନରୁ ଖାଇଛି, ପୁଣି ଠିକ୍ ବଇନି ବେଳରେ ଧଡ଼ପଡ଼ ହେଉଛି । ସତକୁ ସତ ପପର ଟନୁଆ ନ କରି ଜାଣିଲି ଯେ ଗୋଟାଏ କଅଁଳ ବାହୁସଟାର ତଣ୍ଟିରେ ଲାଗିଯାଇଛି, ଅଜ ଉତ୍ତରୋତ୍ତରରେ ଯେ ତାକୁ ଟେକ ଉଗଳକୁ ନେଇ ପାରୁନି କି ପାଟିଅଗ୍ରେ ବାହାର କରି ପାରୁନି, ଫଳରେ ଅସ୍ୱସ୍ତିକର ଗିଁ ଗିଁ ଶବ୍ଦଟାଏ ବାହାରୁଛି ।

ଏଣେ ଦୋକାନୀଗୁଡ଼ାକ ତ ବର୍ଷ ବର୍ଷ ଧରି ସମଗ୍ର କୁକୁରଜାତି ପ୍ରତି ଯେଉଁ ଅଧ୍ୟା, କ୍ରୋଧ ସଞ୍ଚୟ କରିଥିଲେ ତାହା କୁକୁରଟରରେ ନେଇ ଷଣ୍ଢୁଆ ଉପରେ ଝାଡ଼ିବାକୁ ମତଲବ କରୁଛନ୍ତି । ଗୁଡ଼ାଏ ଛୋଟ ଛୋଟ ପିଲା ବି ଜମି ମଜା ଦେଖିବାକୁ ଲାଗିଲେଣି ।

ଅସାମୟିକ ଦୁର୍ଘଟଣାଟାଏ ଯିମିତି ସଙ୍ଘଟିତ ନ ହୁଏ ସେଥିପାଇଁ ସାହସ ବାନ୍ଧି ବଡ଼ ପାଟିଟାଏ କରି ଡାକିଲି, "କୁକୁ ! କୁକୁ ! ଥାଉ

ଥାଉ, ତେର ହେଲ ।'' କୁକୁର କଥା ତେବେ ନାହିଁ; ମଣିଷ ଚେହେରା ଅବସ୍ଥା ବି ତା'ର ନାହିଁ । ତା ଚେହେରୁ ଭାବଭଙ୍ଗୀରୁ ବେଶ ଜଣାପଡ଼ୁଛି ପିମିଚ ବୁଅନ୍ତେ କାହିଁକ, ତା'ର ମାଲିକ ସହିତ ଦେଖିବୁ ଯେବେ ଦେଖା ହୁଅନ୍ତା ତା'ର ମଧ୍ୟ ମୁଣ୍ଡ ପଡ଼ାଇ ନିଟାର କରି ବସନ୍ତା ।

ଆଉ ଯାହେ ଆସେ ସେବାରୁ ବାବୁସାହେବଙ୍କୁ ଚିହ୍ନି ଦେଖି ପାରନ୍ତି । ''ଏ ମୋ ବାବୁସାହେବ ଜୁଡ଼ିଏ ତ ? ସେଇମାନେ କାଳୁ ଟଙ୍କେ ଦ'ଣ ଭଳ ଭରି ପୋଲ୍ଲିପ ଟୁ ପୂର୍ଣ୍ଣ କୁହିଁଲ । ନୀଳରଙ୍ଗ, ମୁଣ୍ଡରେ ଚୁଟ, ଆଖିରେ କଜଳ, ଲମ୍ବା ଅଗରଙ୍କା; କାଳିଆ ଡ'ଣ ବାବୁସାହେବଙ୍କୁ ବୁଝିପାରି, ବଜାରଯାଏ କରି ଦେଉଛି ?''

ଦୁଇ ମାସ ତଳର କଥା । କାଳିଆ ଅନେ ଘରକୁ ଆସିଥାଏ ଲେଖାପୋଛା ଶିଖି ନବା ପାଖରେ । ସବୁ ଦିନ ଦେଖି ଚିକଟିଲ ତା'ରି ପାଖରେ ବସି ତାକୁ ନାନା ପ୍ରଶ୍ନ ପଚାରି ଥଟ୍ଟାତାମସା କରୁଥାନ୍ତି । ତା'ର ଅଲକାତରା ରଙ୍ଗ, ଚଉଡ଼ା ଧଳା ଧଳା ଦାନ୍ତ, ଡିମା ଡିମା ଆଖି, ମାଓ-ସେ-ତୁଙ୍ଗ ଭୁଲତା ପିଲାମାନଙ୍କୁ ଅସରନ୍ତି କୌତୂହଳ ଓ ହାସ୍ୟରସ ଯୋଗାଉ ଥାଏ ।

''ବାବୁ କାଳିଆ କାଲ ବାହା ହେଲାଣି ।'' ମୋତେ ଦେଖି ନବା କହିଲା । ଏ କଥା ଶୁଣି ପିଲାମାନେ ଆତୁର ଉତ୍କଣ୍ଠା ହୋଇ କାଳିଆକୁ ଘେରି କରି ବସିଲେ । ତାଙ୍କୁ ବୋଧହୁଏ ଜଣାଗଲା, କାଳିଆ ଚଡ଼ଖାନାର ଜଣେ ନୂଆ ହିରୋ, ଫିଲ୍ମର ରାଜକପୁର ବା ଜନ୍ ଓୟାକର । କହିଲେ, ''କାଳିଆ ! ତୋ ବୋହୂକୁ ଦିନେ ପାଖରେ ଆଣିବୁ । ଦେଖିବା ।'' (କଣ୍ଢେଇ ଥେଲ ?)

ନବା କହିଲା, ''ବୋହୂ ଅଛିନି ।''

ଛାନଛିଲିଆ କଳଣ୍ଡେ, ଜାକ ଦେଇ ଦେଇ ଯାଲେ ଦାନ୍ତ ପାଟି ଦେଖାଇ ନବବିବାହିତର ଉବେ ସୂଚନା କରି କାଳିଆ ଯୋଡ଼ିଲା, ''ଗ୍ରେଟ

ଭଉଣୀ, ଶ୍ରେଷ୍ଠ ଭଉଣୀ, ଏଥିକି ଜୟ ।"—ସେ'ଠାକୁ ନିଜ ପେଟ ସମାନରେ ରଖି କେଉଁ ଦୂର ମଫସଲ ଗାଁର ବଧୂଟିର ଜଡ଼ତା ଦେଖାଇ ଦେଲ ଯିମିତ ଦୁହିଙ୍କ ଠିକ୍ ମେଳ ହୋଉଛି ।

"ହଁ, ଦଶ ଏଗାର ବର୍ଷ ହେବ, ନୁହେଁ ? ମୁଁ ପଚାରିଲି ।

"ହଁ ସେତିକି ନ ହେଲେ ଦୁଇ ଚାରି ବର୍ଷ ବେଶି ।"—କାଳିଆ କହିଲା ।

"ତୋର ବୟସ କେତେ, କାଳିଆ ?"—ମୁଁ ପଚାରିଲି ।

"ବୟସ ? ମୁଁ କିମିତି କହିବି, ତୁମେ ବାବୁ ଏତେ ପାଠ ପଢ଼ିଛ ହିସାବ କର ।" ପାନ ଛେପ ପକାଇବା ପାଇଁ ଦାଣ୍ଡ ଆଡ଼କୁ ଚାଲିଗଲା; ଫେରି ଆସି ଗଳାକୁ ବେଶ୍ ଜୋର ଖଙ୍କାରି ସଫାକରି ଆରମ୍ଭ କଲା ଜୀବନ ପଞ୍ଜିକା । "ଏଠାକୁ ଆସିଲି ଦଶ ବର୍ଷ ବେଳେ ଉପେନ୍ଦ୍ରବାବୁ ଘରେ ଗୋରୁ ମୁଣ୍ଡିଲି ସାତ ବରଷ । ହୋଟେଲରେ ରହିଲି ନଅ ବରଷ । ମେସ୍‌ରେ ରହିଲିଣି ଆଠ ବରଷ । କେତେ ହେଲା, ହିସାବ ଯୋଡ଼, ଚାଳିଶ ହେଲା ନା ?"

କୌଣସି ପ୍ରକାରରେ ହସ ଚାପି ରଖି ମୁଁ କହିଲି, "ହଁ, ସେତିକି ହବ, ନ ହେଲେ ଦୁଇ ଚାରି ବର୍ଷ ବେଶୀ ।"

ଏତିକିବେଳେ ନିମ୍ନ ପ୍ରାଥମିକ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିବା ଝିଅଟି କହିଲା, "ଚଉତିରିଶ, ଚଉତିରିଶ" । ମୁଁ ତାକୁ କଟମଟ କରି ଚାହିଁଲି । କାଳିଆ ବି ବିବ୍ରତ ହୋଇ କହିଲା, "ପିଲାଗୁଡ଼ିକୁ ହିସାବ ଆସେ ନା; ଚାଳିଶ ହେବ କହୁଥିବେ ।"

ମୋର ଭଲ ବୁଝି, ମୋ ହୃଦୟ ଟାଣିବାର ଚେଷ୍ଟା, ତ୍ରିଶଙ୍କୁଆଳର ମିଠା ସ୍ୱଭାବ ଭଙ୍ଗୀରେ ଦର୍ପ ବକ୍ରତା ତ୍ୟାଗ କରି କାଳିଆ ଅତି ନମ୍ର ସ୍ୱରରେ ନିବେଦନ କଲା, "ବାବୁ, କଥାଏ କହିବି କହିବି ବୋଲି ଭାବୁଛି,

କହି ପାରୁନି, ନ କହି ରହି ପାରୁନି । ବାବୁ, ଏ ଛେଉଣ୍ଡ ବାଛୁରିଟା ମୋତେ ଦିଅ । ଯାହା ହବ ପଛେ ହେଉ । ଶାଶୁବୁଢ଼ୀ ଝିଅ ସାଙ୍ଗକୁ ବାଛୁରିଟାଏ ବି ଦେଇଛନ୍ତି । ଯୌତୁକ କରନ୍ତୁ ତା ସାଙ୍ଗକୁ । ମାଣେ ଅଧେ ଗଞ୍ଜାବଖରା ନେଇ ସୁଖ କରିବ ଭାବୁଛୁ । ଆଉ କେତେ ଦିନ ଧନ ହୁଳସେବା କରିବ ?

ଛଅମାସ ଧରି ଭାଗିଆ ମୋ ଘରର ସେବା କରିଛି, ଦୁଧ ଦୁହିଁଛି, ଗାଈର ମୂତ୍ରାଗୋବର ବି ଅଳ୍କାର କରିଛି । ତା' ଛଡ଼ା ତା'ର ମିଠା ବୋଲାମି, ଗୋଡ଼ବନ୍ଧ ଗୁଣ ମୋତେ ଓ ମୋ ପିଲାଛୁଆଙ୍କୁ ଟିକେ ଅନ୍ଧ ନ ଦେଉଛି !

ହଠାତ୍ କହିଲି, "ଭାଗିଆ ! ତୁ ମୋତେ ଅଳ୍ପ ପଇସା ଲୋଭ ଦେଖାନା । ଏମିତି ବାଛୁରିଟାକୁ ନେଇଯା । ଭଲ କରି ଝିଅ ପୁଅ ପରି ଯତନରେ ପାଳିବୁ ଏକା ।"

ଏତିକବେଳେ ବାଛୁରିଟା ଖୁବ୍ ଜୋରରେ ହଁ ହଁ ଶବ୍ଦ କରି ହାମ୍ବୁଡ଼ି ପଡ଼ିଲା । ଭଗବାନ ଯିମିତି ଆଉ ଅନ୍ତେଅଧରେ ବାଛୁରିର ଅବସ୍ଥା ଘାଘାଞ୍ଚିକ ଦେବ । ଭାବିଲି, ସେବେ ବାହାର ପଟେ କହେଁ, "ଛୁଆ, ଛୁଆ, ଏ ମୋ ବାଛୁରି ।" ତେବେ ଏ ଶ୍ରେଣୀବୁଢ଼ାଙ୍କର ଦବୁ କ୍ରୋଧ ମୋ ହୃଦରେ ଉଦୟ ଏବଂ କବି ଶିଳ୍ପୀଙ୍କୁ ଜନ୍ମତ୍ର ଦେଶୀୟ ଜନତା ଯିମିତି ଠକୁରା ଠକୁରା କରି ଦେଉଥିଲେ ସିଟିକି ଅଛି ବୁଝି ମୋତେ ବାଧ୍ୟଇ ହେଲପିବେ । ପୁଣି ଭାବିଲି, ଆଇନତଃ, ନ୍ୟାଯ୍ୟତଃ ଏ ବାଛୁରି ଭାଗିଆର, ମୋର ନୁହେଁ । କାରଣ ମୁଁ ତାକୁ ଦାନ କରିଦେଇଛି, ସେ ମାସ ମାସ ଧରି ତାକୁ ପାଳି ବଡ଼ କରିଛି ।

ତଥାପି ସତ୍ପ୍ରେରଣାରେ ଖୁବ୍ ନରମ ସ୍ୱରରେ କହିଲି, "ଥାଉ, ଥାଉ, ଦୁଷ୍ଟ ତେଲ ଡେଇଁ, ବେଶ୍ ମନ୍ତପିବ ଯେ ।" ଦୁଷ୍ଟ ମୋ କଥା ଭଲକରି ଶୁଣିଛି କି ନାହିଁ କଲି ଗଲା ଅଛି ଦୁଇଟା କୁହୁକ ତନ୍ତ୍ର ପରି ବୁଲାଇ ମୋ ଆଡ଼କୁ ଚାହିଁଲା ଓ ଗର୍ଜି ଉଠି କହିଲା "ସେ କ'ଣ ଚମ

ବାଳୁଙ୍ଗ କି, ଘର ଭଦ୍ରଲୋକ ତ ।" ମୁଁ ଗାଢ଼େ ପୂର୍ବପରି ମନେ ମନେ 'ନା' କହିଲି ।

ବଣୁଟୁଆଟା ବୋଧହୁଏ ତା' ପୂର୍ବତନ ମାଲିକର ବାହନା ବାରି ପାରିଲା, ଗଳାସ୍ୱର ଚିହ୍ନି ପାରିଲା । ହଠାତ୍ କାନ ଠିଆ କରି ମୋ ଆଡ଼କୁ ଫୁଲ ଆଖି ଦୁଇଟା ବୁଲାଇ ଅତି କରୁଣ ଦୃଷ୍ଟିଟାଏ ମୋ ଆଡ଼କୁ ଦେଲାପରି ଜଣାଗଲା ।

ବାସ୍ତବିକ ନପୁଂସକ ପରି କେତେ କାଳ ଛିଡ଼ା ହୋଇ ଆଖି ଆଗରେ ଧୀରେ ଧୀରେ ବାଳୁଙ୍ଗଟା ମରିବାର ଦେଖିବ ? ଗୋ-ବଧ ପ୍ରାୟଶ୍ଚିତ୍ତ କରିବ କିଏ—କୃଷ୍ଣ ନା କାଳିଆ ନା ମୁଁ ?

ହଠାତ୍ ବୁଦ୍ଧିଟାଏ ମନକୁ ଆସିଗଲେ । ବଡ଼ ପାଟିଟାଏ କରି ଡାକିଲି, "ଆସ ଆସ, କୃଷ୍ଣ ! ମୋତେ କୋଡ଼ିଏ ଟଙ୍କା ଅଗ୍ରୀମ ଦିଅ । ତା'ପରେ ଯାହା କରିବ ।" 'କୋଡ଼ିଏ ଟଙ୍କା' ଶବ୍ଦ ଦୁଇଟା ଉପରେ ଟିକିଏ ବେଶୀ ଜୋର ଦେଇ କଥାଗୁଡ଼ାକ କହିଲି ।

ଟେଷ୍ଟ ବ୍ଲକଅର ନଅାଁ କଲକତା ବଡ଼ ଦୋକାନରେ ଟଙ୍କାର ଚିହ୍ନିତ ନୋଟଟାଏ ବା ସେମିତି ଥାରମୋମିଟରରୁ ୧୧୦ ଡିଗ୍ରୀରୁ ୯୪ ଡିଗ୍ରୀକୁ ହଠାତ୍ ଖସିଆସେ କୃଷ୍ଣର ମୁଣ୍ଡର ଉତ୍ତାପଟା "କୋଡ଼ିଏ ଟଙ୍କା" ଶୁଣିବାରେ ହଠାତ୍ ତଳକୁ ଖସି ଆସିଲା । କିନ୍ତୁ ଅନ୍ୟ ହେବା ପୂର୍ବରୁ ଫେର ସେଇ ଦେଖିଲି ସେ ତଳ ଉଠି ଏମିତି ଚୋଟାଏ ଜୋର ଚୋଟ ବାଳୁଙ୍ଗ ଉପରେ ଦେଇ ଦୋକାନକୁ ଫେରିଲା ଯାହା ତା'ର ଶେଷ ନିଃଶ୍ୱାସକୁ ବାହାର କରିଦେବା ପାଇଁ ଯଥେଷ୍ଟ । ମୁଁ ନିଅଣ୍ଟକୁ ବୁଝି ପାରିଲି ନାହିଁ । ବାଳୁଙ୍ଗଟାର ଚିହିଁ ଶେଷ ବନ୍ଦ ହେଲା ପରି ମୋତେ ଜଣାଗଲା ।

ବଡ଼ ପୁଅ ଦେଇଥିବା ସିମେଣ୍ଟ ବୋରାରେ କୋଡ଼ିଏ ଟଙ୍କା ଅଗ୍ରୀମ ଧରିଲି ଦୋକାନରେ ରଖିଥିଲେ । ତାକୁ ଆଣି ଦଶ ଟଙ୍କିଆ ଦୁଇଟା ସହଜ କଲି । ମନଟା ଟିକେ ହାଲୁକା ହେଲାରୁ ପୁଣି ବାଳୁଙ୍ଗଟାକୁ ଚାହିଁ ଦେଖିବା

ପାଇଁ ବାବୁଙ୍କର ଅବସ୍ଥା ।' ଦେଖିଲି ସେଠି କେହି ନାହାନ୍ତି । ଯେଉଁ ଦୋକାନକୁ ସେଇ ସମସ୍ତେ କାରବାରରେ ଲାଗି ପଡ଼ିଲେଣି । ଦେଖଣାହାରିମାନେ ବି କୁଆଡ଼େ ଅନ୍ତର୍ଦ୍ଧାନ ହୋଇ ଗଲେଣି । ଷଣ୍ଢଟା ଉପରକୁ ପେଟ ଦେଖେଇ ଚିତ୍ତ ଓ ଅଗନିଶ୍ୱାସୀ ହେଉଛି । ପଶି ମୁଠାଏ ଦେଇ ଗତଲ । ଆଜିର କେଉଁଠି, କମିଶ, ଭାଙ୍ଗିରେ ? ଚାଳ ଜଳରୁ ଆଣିଲେ ପିଆଇବ କମିଶ ଏକୁଟିଆ । ଏଠି ଖଣ୍ଡକ ଉପରେ ମିଷ୍ଟ ଯାଇ ଚାଲାଁ ପଡ଼, ଲଣ୍ଡଭଣ୍ଡ ହାସ୍ୟାସ୍ପଦ ଦେବା ଯାଉ ହେବ ଦିନ । ଏଇ ବଜାରକୁ ସଞ୍ଜବେଳକୁ ତ ପୁଣି ଆସିବ ସେଇ ସଉଦା ପତାଉରବା ପାଇଁ ।

ତଥାପି ଜଣେ ଦୋକାନୀକୁ ଡାକିଲି । ସେ କହିଲା, "ବାପୁ ହେଲେ ନା କ'ଣ ? ଜାଣି ଜାଣି ଗୋବଧ ହ୍ରାଦୃଷ୍ଟିରେ ପ ହେଲେ ପୋଲିସ କେସ୍‌ରେ ହାତ ପୂରାଉଛନ୍ତି କାହିଁକି ?" ମୁଁ ନିରସ୍ତ ହେଲି । ସେ ଗାବଠାକୁ ତା ଭାଗ୍ୟ ଉପରେ ଛାଡ଼ି ଦେଇ ଘରକୁ ଆସିଲି ।

ସଞ୍ଜବେଳେ ଜାଳଆ ଆସିଲା ନବା ସାଙ୍ଗରେ । କହିଲା, "ବାବୁ ଯେଉଁ ବାଛୁରୀଟା ମୋତେ ଦେଇଥିଲେ ସେଇଟା । ସେଇଠାରେ ବଜାର ଧାରରେ ପଡ଼ି ମରିଗଲା । କଣ ଗୋଟାଏ ନୂଆ ରୋଗ ଆସିଛି. ଡାକ୍ତର ବି ଚିହ୍ନିପାରୁ ନାହାନ୍ତି । କେତେ କେତେ ଗୋରୁବାଛୁରୀ ମରି ଯାଉଛନ୍ତି ଆଖି ପିଛୁଳାକେ ।"

"କଏ ମାରି ଦେଲା ଜରେ ବାଛୁରୀଟାକୁ ?" ମୋ ପାଟିରୁ ବାହାରି ପଡ଼ିଲା ।

"ନା ବାବୁ ! ମୋ ବାଛୁରୀକି ମାରିବ କିଏ ? ଯାହା ହେଲେ ଘର ଭିତରେ ବନ୍ଧାଥାଏ ସେ ।"

ତହିଁଆର ଦିନ ବଜାରରେ ପାନବାଲାକୁ ପଚାରିଲି, "ବାଛୁରୀଟା କାହାର ଜଣା ଅଛି ?"

"ହଁ ବାବୁ ! ବାଛୁରିଟା ଖାଲ୍ପିଆ ବୋଲି ନେଶନାଲ ହେସ୍‌ର ବୁଜରର । ତାକୁ ଜୁଅଡ଼େ ଜଣେ ବାବୁ ବାଛୁରିଟାକୁ ଏମିତ ଦେଇ ଦେଇଥିଲେ । ଧରି ବସିଥିଲେ କାଳିଆ କୃଷ୍ଣଙ୍କୁ ଅତ କମ୍ପାମ୍‌ରେ ପସ୍ୱଣଟା ହଙ୍କା ଅଦାପୁ କରି ନଥାନ୍ତା ! ତାଠୁଁ ବୋକା ସାଧାସିଧା ଲୋକ ଦୁନିଆଁରେ ଅଉ ଅଛନ୍ତି । କୋଡିଏ କଦଲି ଅଙ୍ଗୁର ଦାମ୍ ନେଇ ଚରୁ ରକ୍ଷିଲ । ପେର୍ ନିଜେ ବଡିରେ ନବା ସାଙ୍ଗରେ ବୋଝ ମଲଟାକୁ ଫଟାଣିରେ ଫୋପାଡ ଦେଇ ଅସିଲ । ନହେଲେ ବୃଦ୍ଧ ପ୍ରୋଳମ କେଜ୍‌ରେ ଟଡଥାନ୍ତା ଅମେ ତ ତାକୁ ଗୋ-ବଧରେ ଫକାଇ ପ୍ରାୟଶ୍ଚିତ କରାଇଥାନ୍ତୁ ।"

ବାଛୁରି ତ ଗଲା । ଖାଲିଆ ତ ଲୁଅମାସର ଗୋରୁମୁଣା ମଜୁରି ବାବଦ୍ କୋଡିଏ କଦଲି ଅଙ୍ଗୁର ଦାମ୍ ପାଇଗଲା । ମୋ ଘର କଣରେ ସେଇ କୋଡିଏ କଦଳି ଅନୁ ପଡିଛି । ସେଗୁଡାକ ଖାଇବ କିମିତ ? ତଣ୍ଟିରେ ଲୁଚି ଯିବ ନାହିଁ ତ ?

---

# ହୀରାକୁଦ କରେଣ୍ଟ୍

ଯେଉଁ ସମୟରେ ସରୋଜ ବାବୁ ହୀରାକୁଦ କରେଣ୍ଟକୁ ଡରୁଥିଲେ, ନିନ୍ଦା କରୁଥିଲେ, ସେହି ସମୟର ଗୋଟିଏ ଦିନର କଥା ।

ସବୁଦିନ ପରି ସେଦିନ ସକାଳେ ମଧ୍ୟ ସରୋଜ ବାବୁ ଖବର-କାଗଜର ସିନେମା ପୃଷ୍ଠାଟି ପଢ଼ି ସାରି ଆଖି ପକେଇଲେ ପାଣିପାଗ ବିବରଣୀ ଉପରେ ।

"ଘଡ଼ଘଡ଼ି ଚଡ଼ଚଡ଼ି ସହ ବିକ୍ଷିପ୍ତ ଭାବରେ ଉପକୂଳବର୍ତ୍ତୀ ଅଞ୍ଚଳରେ ବର୍ଷାର ସମ୍ଭାବନା ।"

ଘଡ଼ଘଡ଼ି ଚଡ଼ଚଡ଼ିକୁ ପିଲାଙ୍କୁ ଯିନା ଡର, ବୁଢ଼ାଙ୍କ ପାଖାପାଖି ସରୋଜ ବାବୁ ଡରିବେ କାହିଁକି ?

ପ୍ରକୃତ କଥା କହିଲେ ସରୋଜବାବୁ ଘଡ଼ଘଡ଼ି ଶବ୍ଦକୁ ଡରନ୍ତି ନାହିଁ, ଭୟ କରନ୍ତି ବଜ୍ରପାତକୁ । ମାତ୍ର କେତେ ଦିନ ତଳେ ତ କଣ୍ଟି ଗାଁର ଦୁର୍ଗା ଚରଣର ସ୍ତ୍ରୀ ଚାଳପୋଛଣି ଗାଧୁଆ ତୁଠରେ ବାସନ ମାଜୁ ମାଜୁ ହେଇ ବଜ୍ରରେ ଚାଲିଗଲା । ଚଣ୍ଡେଶ୍ୱର ପିଲାପୋତାକ ଘରେ ବୁଢ଼ୀ ବସିଥିଲେ ମାଆ ଫେରିବାକୁ, ମାଆ ଆସିଲେ ଆଗ ପଖାଳ ବାଢ଼ି ଦେଇ ଥାଆନ୍ତି।

ସେଇ ତାଙ୍କର ଗାଁରେ (ତାଙ୍କ ଗାଁକୁ କୁଅଁଗ୍ରେ ବଜ୍ରର ସ୍ତବ୍ଧ ବାଦ) ପାଞ୍ଚ ଅଠ ବର୍ଷ ତଳେ ବନ୍ଧୁ ହରିଶ୍ଚନ୍ଦ୍ରଙ୍କର ଶ୍ୱଶୁର ଘରନାଡ଼ରେ ସେହି ତାଳ ଗୋଟେସ୍ତମ୍ଭଣ୍ଡାରେ ମଣ୍ଡ ଝଡ଼ିଥିବାର ସେ ନିଜ ଆଖିରେ ଦେଖିଛନ୍ତି । ତାହାକୁ କହନ୍ତି ଅକାଳ ବଜ୍ର । ସରୋଜ ବାବୁ ଥିଲେ ବୋଲି କୁହାବୋଲା କରି ଘରେ ଲେଡେକ୍ଟୋର କରିଦେଇ ଥାଉଲ, ନ ହେଲେ ହେନିଏ ନିଷ୍ଠା ବ୍ୟସ୍ତ କରିଥାନ୍ତା । ତାଙ୍କର ନ୍ୟାରେ ପର କମଳକୁ ନିଷ୍ଠା ଦେଖିବାକୁ ଦେଖସନ୍ନ ନାହିଁ । ମୁହିଁଟା ଟୋପ ଜଳ ବଡ଼ କରେଁ ବସୁଥିଲ । ପୁଣି ସରୋଜ ବାବୁ ନ ଥିଲେ କମଳମାକୁ ଦମ୍ଭାଳୁ ଥାଆନ୍ତା କଏ ? ବର୍ଷେକାଳ ବାର୍ତ୍ତାଟି ପରି ଯେ ହେଲ, ଏବେ ବ କୁଆଡ଼େ ମେଘ ଦେଖିଲେ ଡରେ, ଆଜି ବଜ୍ର ମାରନ୍ତି ତ, ଗଛ, କାନ୍ଥ, ଖୁଣ୍ଟ ପାଖରେ ଯାହା ପାଏ କୁଣ୍ଢାଇ ଦେଇଏ । ଟେବା ହୋଇ କମଳମା ବାପଘରକୁ ଯାଇଛନ୍ତି ଯେ ଆଜି ଫେରନ୍ତି । ଶ୍ୱଶୁର ଘର ବ ପୁଅଝିଅଠାକୁ ଅଣିବାର ନାଆଁ ଧରୁଥାଏନି ।

ସତ କହିଲେ ବଜ୍ରକୁ ନ ଡରେ କିଏ ? ସେଥିରେ ତ ଭୟ ବଜ୍ରକୁ । କମଳମାର ବି ଭୟ । ସରୋଜ ବାବୁଙ୍କର ବି ଭୟ ।

କନ୍ତୁ ଗଲ ଦୁଇବର୍ଷ ହେଲ ସରୋଜବାବୁଙ୍କର ବଜ୍ରଠୁଁ ବେଶୀ ଭୟ ବନ୍ୟାକୁ । ତାଙ୍କ ମତରେ ଏଇ ବନ୍ୟା ହେଉଛି ଅବଡିନାଲ୍ କରେଣ୍ଟ । ଦୁଷ୍ଟିର ଡାକବାଳରେ ରବେନ୍ ଗୋରେବେନ ବ୍ରାଉନିଂର ସ୍ୱରରେ କହିଲେ, "କେତେ ଦେଖନ୍ତି ବି କଥା ।" ଝେଙ୍କାରେବେଳେ ମହାଶୂନ୍ୟର କମାଣ୍ଡବସା ଅନ୍ଧକାରର ବଡ଼ ଖଣ୍ଡ ବାହାରିଥିବ ଏଇ ବନ୍ୟା ଅନେକ ଜ୍ୱଳେ । ଆବିଷ୍କୃତ କରେଣ୍ଟ ହେଲ ବଣ୍ୟାମିଶ୍ରୀ ମୃତ୍ୟୁ । ଦୃଷ୍ଟିଗୋଚର କରେଣ୍ଟ ଅପାର, କୋଟି କୋଟି କରେଣ୍ଟ, ଆବିଷ୍କୃତ କରେଣ୍ଟ ମାତ୍ର କେତୋଟି ହଜାରର ।

ସ୍ତ୍ରୀ ବୋଲ ଠିକ କରେନି ଅତିକ୍ରି ବୁଝିବେ ଯେ ପାରନ୍ତୁ ଏ ପାଳକୁ, କୌଣସି ବଳନ୍ତାଳିର ମହାତାହୁକୁ ୯ ୧ ଟ ସେପାଖ ରଖି ଖବର । ଜୋର ଝଡ଼ ହେଲ ତ ଦପ୍ ଦପ୍; କେଣ୍ଟା ମାରିଲେ ଏକାବେଳେକେ ଦପ୍ ।

ସବୁ ଶେଷ । ସରୋଜ ବାବୁଙ୍କ ସିନେମା ଦେଖା ଇଚ୍ଛା । ଝୁରି, ପାଟି, ଗଣ୍ଡଗୋଳ, ଝଗଡ଼ା, ଝୁଲିସିଲ୍ । ଅପରେଟର୍ ର ଚଣ୍ଡ ପୁରୁଷ, ମେନେଜରର ଚଣ୍ଡ ଦୃଷ୍ଟିକୁ ଖାତିର । ଶେଷରେ 'ଟିକଟ ଫେରସ୍ତ' ଚକ୍କର । ପିଲପିଲି ମେଞ୍ଚଣ୍ଡ ଠେଲ । ଧାକ୍କାଧକ୍କି କରେଣ୍ଟ୍ କୁ ଡରନ୍ତି, ଘୃଣା କରନ୍ତି ସରୋଜ ବାବୁ ସେଇଥିପାଇଁ ।

ସରୋଜ ବାବୁ ଏବେ ଚାଷି-ବାସ ଜାଣିବାରେ ଏକ୍ସପର୍ଟ । ଧାନଗଛ ଖାଣ୍ଟି ଚିହ୍ନିପାରନ୍ତି । ମେଘ କାହିଁ ? ଧାନ କେତେରେ କ'ଣ ତଉତଉ ହେବ ? ଅଳ୍ପବୃଷ୍ଟିର ପାଣିପାଗ ମାପିବାର ଯନ୍ତ୍ରଟା ବୋଧହୁଏ ଫାଟି ଗଲାଣି । କେତେ ଥର ଦେଖିଛି ବୃଷ୍ଟିବର୍ଷାର ସୂଚନା ଆଉ ଚମ୍ପାଟି ଦେଇ ହୋଇନାହିଁ ।

ସରୋଜବାବୁଙ୍କ ଦୁଃଖ ଯେ, ସେ ଯେବେ ଭଲ ଜାମଟିଏ କରି ବସନ୍ତି ନାନା ଚିନ୍ତା ଆସି ଘେରନ୍ତି । ସେ ଯେବେ ସିନେମାକୁ ଯାଆନ୍ତି ପିଲାବୁଢ଼ାଙ୍କର ମୁହଁ ଦିଶିଯାଏ । ସେଇ ଏକ ଶିଖ ଏକ ଭାବରେ ସେମାନଙ୍କର କଥାବାର୍ତ୍ତା ଚାଲେ ।

"ମାଆ ମରିଯିବା ପରେ ବାପା ଆଉ କେଉଁ ଛବି ବାଦ୍ ଦେଇ ନାହାନ୍ତି । ବାପା ବଡ଼ ଚେଲେଞ୍ଜି ।"

"ମାଆ ତ ବାପାଙ୍କୁ କେବେ ମନା କରୁ ନ ଥିଲା, ସିନେମାକୁ ଯିବାପାଇଁ ।"

"ମାଆ ଥିଲାବେଳେ ବାପା ନିଜେ ତ ଯାଉ ନ ଥିଲେ, ଆମକୁ ବି ଯିବାକୁ ଦେଉ ନ ଥିଲେ ।"

ସରୋଜବାବୁ ହଠାତ୍ ପିଲାଗୁଡ଼ାକୁ କହିଦେବେ "ଅରେ ପିଲେ ! ତୁମ ମାଆ ତ ନାହିଁ, ତାହାର କଥା ଶୁଣି ଶୁଣି ମୁଁ ଯଦି ମରେ ତୁମେ ବି ମରିଯିବ ଯେ ।'

କିନ୍ତୁ କହୁଛି କହନ୍ତି ନାହିଁ, ପିଲାଗୁଡ଼ାକ ଅବା ବାପାଙ୍କ ମନକଥା କ'ଣ ବୁଝିବେ ?

ସାଙ୍ଗସାଥୀ ବନ୍ଧୁବାନ୍ଧବ ସରୋଜବାବୁଙ୍କ ସହିତ ଦେଖା ହେଲେ ବ୍ୟଙ୍ଗ ଶ୍ଳେଷ ଭରି ପ୍ରଶ୍ନ ପଚାରନ୍ତି, "କାଲିକା ଛବି କମିତି ଲାଗିଲା ?" "ଆଜି ଦେଖୁଛ ?" କାଲି କ'ଣ ନୂଆ ଛବି ପଡ଼ିବ ?" ସରୋଜ ବାବୁ ସେମିତି ଏକାଧାରରେ ପ୍ରଡ୍ୟୁସର, ଡିଷ୍ଟ୍ରିବ୍ୟୁଟର, ସେନ୍‌ସର, ଫିଲ୍‌ମ କ୍ରିଟିକ୍, ଏକ୍ଟର ଅଥବା ଶକ୍‌ସାବାନ୍ଧ ।

ସରୋଜବାବୁ ଶାବନ୍ତ ସେମାନଙ୍କୁ କହି ଦେବେ, "ବନ୍ଧୁଗଣ ! କରୋନେଶନ୍ ଥ୍ରମ୍ବୋସିସ୍ ବୋଲି ଏକ ରୋଗ ଅଛି, ଯାହା ହୃତ୍-ପିଣ୍ଡକୁ ଅତର୍କିତରେ ଆକ୍ରମଣ କରେ ଓ ନିଷ୍ଠୁରଭାବେ ଠାଏଁ ମାରେ ।"

କିନ୍ତୁ କହୁଛି କହନ୍ତି ନାହିଁ । ବନ୍ଧୁବାନ୍ଧବ ତାଙ୍କ କଥା ଅବା କଅଣ ବୁଝିବେ ?

ଥରେ ସେ କେବଳ ତାଙ୍କ ସ୍ତ୍ରୀଙ୍କୁ କହିଥିଲେ, "ନାଚ ଗୀତ ହୁଲହାଟିରେ ମୋ ମୁଣ୍ଡର କଳଙ୍କବିଜ୍ଞାଗୁଡ଼ିକୁ ମୁଁ ମାଡ଼ି ମକଚି ଦେବାକୁ ଚାହୁଁଛି, ମୋର ତ ଫେର୍ ବଞ୍ଚିବା ଦରକାର ।"

ପିଲାପିଲିଙ୍କୁ ସମ୍ବୋଧନ କରି ସରୋଜ ବାବୁ କହିଲେ—'ଟାର୍ଜନ ଛବି ରବିବାର ମେଟିନି ସୋ ଅଛି, ଯେବେ ନ ଯିବ, ବୁଝିଲ ।'' କିନ୍ତୁ ବଡ଼ ଝିଅକୁ ଶେଷ ମିନତି ଉପଦେଶ ଦେଲେ, "ଟୁନୁ ମୁନୁକୁ ମୋ'ର ଅଶୌଚରେ ଶୁଆଇ ଦେଇ ଘୋଡ଼ା ଗୁଡ଼ାଇବୁ । ଜବାଠ-ଷିଡକ ସବୁ ବନ୍ଦ କରିଦେବୁ, କାଳେ ଝଡ଼ ହେବ । ଦେଖିବୁ ସେ ସବୁ ସେମିତି ଉପାସେ ନ ରହନ୍ତି । ରଖିଥିଲି, ମଦ୍ୟମଞ୍ଚ ଟେବୁଲ ଉପରେ ।"

ଘଡ଼ି ଦେଖିଲେ । ପାଞ୍ଚଟା ପଚିଶି । ଛଅ ବେଳରେ ଯୋଗ । ପାଣିପାଗ ଖବରଣୀ ମନେ ପକାଇ ଚାହିଁ ଦେଲେ ଆକାଶକୁ ।

ସ୍ୱର୍ଣ୍ଣଚିତ୍ର ପାହାଡର ଆରପାଖରୁ ଶେଷଥର ପାଇଁ ସୂର୍ଯ୍ୟରଶ୍ମୀର ନାଲି ମୁହଁଟାକୁ ଲୁଣ୍ଠି ଦେଇ ସୁଟିଦେବ କହୁଛନ୍ତି, "ଆଜି ଏତିକି, ପୁଣି କାଲି ଦେଖାହେଲେ, ଗୁଡ୍‌ନାଇଟ୍ ଡିଅର୍ ।"

ଝର୍କାରେ ବସି ଚଞ୍ଚଳ ମନ ଗୋଟିଏ ପ୍ରେମ ମେଘଟାଏ ଦିମୁକପାଳ ଧାପାଡ଼ର କହିଁ ଅନ୍ଧାରସ୍ତୂପ ଗୁମ୍ଫାରୁ ମୁଣ୍ଡ କାଢ଼ି କହିଲ "ଏ ! ଏଠି କ'ଣ କରୁଛ ?"

ତାରାଟିଏ ଚନ୍ଦ୍ରକୁ ଚାହିଁ କହୁଛି, "ତୁମେ ଯେତେବେଳେ କଅଁଳ ଚୋରା ମେଘରେ ମଞ୍ଜୁମାଳତି ଚଳାଇ ମୋ ପାଖରେ ଟିକିଏ ଦେଖିବାକୁ, ମଜ୍ଜା କରିବାକୁ ଆସ, ଏଇଲା ସଞ୍ଚାରିତା ହେବା ପରେ କି, ଅମ ଦର୍ଶିକି ଛାଡି ଯାଉ ଦେବାପାଇଁ ଫ୍ରିଲଟର ଏଇ ଦୁଷ୍‌ମନ୍ଟାକୁ ।"

ଠିକଠ୍ କର ବୃଦ୍ଧ ଚନ୍ଦ୍ରନ୍ତ ସରୋଜ ବାବୁ । ଦେଖିଲେ କିପରି ଜଣେ ସ୍ୱୀଲୋକ ଉଭାହୋଇଛନ୍ତି । ହେଲା ଚନ୍ଦ୍ରା ମୟ ଜଣାଗଲ । କେଉଁଠି ଦେଖିଛନ୍ତି ବୋଧହୁଏ । ଧଳା ଓଲଟିଚ୍ କାଳଚେ ଶାଢୀ, ସବୁଜରଙ୍ଗର ବ୍ଲାଉଜ; କପାଳରେ ସିନ୍ଦୂର ନାହିଁ । ତାଙ୍କ ଶରୀର କମନୀୟ ନୁହେଁ ତ ? ଏତେ ସଫା ରଙ୍ଗ, ଗୋଲଗାଲ ଦେହ ବକୁଳର ଆସିବ କାହିଁ ? ସେଇ କମନୀୟ କେଉଁଠି, ସେ କେଉଁଠି ? ସେ ତାଙ୍କର ମାନସୀ ହେବେ ତ ମନ୍ତ୍ରବାଣୀ ଶୁଣିବାପାଇଁ ଏଠାକୁ ଆସିବ କପର ? କେଉଁ ମହାବଳୀର ନାଃଚଣ୍ଡ ସନ୍ଧାରେ ତୁଳସୀ ମୂଳରେ ନିଷ୍ଠିଲ ଘଣ ବା ନର୍ତ୍ତନ ଦକ୍ଷରେ ଅର୍ଥହୀନ ଧର୍ମ୍ୟ କେଉଁ ଏକ ମୂକ-ବଧୀର ଝଡ଼ର ଅଦୃଶ୍ୟ ଶକ୍ତି ଅଗରେ ହୋଇ ହୁଏ ତ କମ କହୁଥିବ, "କଜ୍ଞାଟାଏ ଉଥର କରିବାପାଇଁ ଅଡ଼ୁର କେତେଦିନ ଲାଗୁଛି ତୁମକୁ ?"

ଏ ଘଟଣରେ ତାଙ୍କ ନିଜ ଅବସ୍ଥା କେଉଁ ଅବା ଭଲ ଅଛି ? କୁନ୍ତଳର ଦୁଇବର୍ଷରୁ ବେଶୀ ହବ ତାଙ୍କର ସୁନାର ସଂସାର ଘଡ଼ିଦେଇ ଗୁଲିଗଲଣି । ମୁନୁ ଦୁଇବର୍ଷର ହେଲାଣି ଗଲାଣି ଯେ । ସରୋଜବାବୁ ତ ଲୁହ ନ ଗଡ଼ାଇ ଟାଣୁଆ ବଜ୍ର ପେଷିତ ତାଙ୍କୁ ଏତା ଥରକେ ମାର ଦଉଛନ୍ତି, କନ୍ତୁ ଛୋଟ ଛୋଟ ପିଲଗୁଡ଼ାକ ?

ଖବରକାଗଜରେ ଲେଖା ଥ 'ବଜ୍ରଲକ୍ଷ୍ମୀହାଟ' ବାହାରିଛନ୍ତି । ମାତ୍ର ଜଳ ବୃଷ୍ଟି କରେଣ୍ଟ ଅଭାବରେ ଶୋ ବନ୍ଦ ଥିଲା । ଆଜି ସେଥିପାଇଁ ମାଟିନି ଶୋ'ର ବ୍ୟବସ୍ଥା । ଲୋକେ ସତର୍କ ହୋଇ ଅଧା ଟିକେଟ ହାତରେ ଧରିଛନ୍ତି । କେତେବେଳେ କେଉଁ କଥା । ସ୍ଥଗିତ କରିଦେବେ ତ !!

ବକ୍ସଅଫିସ ଓ ସମ୍ବାଦ ପତ୍ରଗୁଡ଼ିକ ପରେଶବାବୁଙ୍କୁ ମୁହଁଦେଇ ଭଲଲାଗେ । ସେଥିପାଇଁ ଠେକ୍ ଟାଇମ୍ ରଖି ସେ ଜାଗାରେ ବସିଥାନ୍ତି । ସେଗୁଡ଼ିକ ଛୋଟ ଛୋଟ, ମାତ୍ର କେତେଗୁଡ଼ିଏ ଲମ୍ବ । ରଙ୍ଗୀନ୍, ହଳଦିଆ ରକମର ମଜା ସେଥିରେ ଥାଏ । ପରେଶ ବାବୁ ଫିଲ୍ମ ଦେଖନ୍ତି, ଅନୁଭବ କରନ୍ତି ପାଖ ଲୋକଙ୍କ ଉପସ୍ଥିତି । ତାହାର ଚେହେରା, ପୋଷାକର ବାସ୍ନା ଓ ମଦଲିର ଗନ୍ଧ, ତା' ପାଟିରୁ ଚୋବା ପାନ, ଅତର ମୁହଁର ପାନ୍ଥଉରର ଜର୍ଦ୍ଦା ମହକ ।

ସବୁଦିନ ଦେଖିଲେ ବି ଆଜି ବଡ଼ା ଉତ୍କଣ୍ଠାରେ ଦେଖନ୍ତି କପୂର ରୂପକଣ୍ଠୀ ନାୟିକା "ହେମମାଳା" ଲକ୍ସ ଟଏଲେଟ୍ ସାବୁନ୍ ବ୍ୟବହାର କରି ରୂପଲାବଣ୍ୟ ବଢ଼ାଉଛନ୍ତି । ସ୍ନେହମୟୀ ମା' "ହେମମାଳା" ନେସ୍ଲେର 'ଡାଲଡା' ବ୍ୟବହାର କରି କୁନି ପିଲାଙ୍କ ସ୍ୱାସ୍ଥ୍ୟ ବଢ଼ାଉଛନ୍ତି । ଜଣେ 'ଏନାସିନ୍'ର 'ଜ୍ୱରଦବା' ଲକ୍ଷ ଲକ୍ଷ ଲୋକଙ୍କୁ ତାଜା ଓ ଉତ୍ପାଦନକ୍ଷମ କରୁଛି ଏବଂ କରେ "ଓଷ୍ଟ୍ରେନ" କେଟାଗିର ଜୋତା ଦେଇ ଯୁବକ ଓ ଯୁବତୀଙ୍କୁ ମଧ ଅଭିନେତ୍ରୀ ଭଳି ଲାଗୁଛନ୍ତି ।

ଇଣ୍ଟରଭାଲ ଦେଖାଯାଏ ବନ୍ଦ । ପରେଶ ବାବୁଙ୍କ ଡାହାଣ ପାଖରୁ ଯେଉଁ ଲୋକଟା ବସିଥିଲା, ସେ ଛବି ଦେଖି ମନ୍ଦୁ ଜଳଦେଲେ ଉଠିଲା ।

ଏ ଛବିଟି ଆଜି ନମାର ଦୋକାନରେ ନେଇଯିବି ।"

ତା' ପରେ ଭ୍ରାମ୍ୟମାଣ ଡକୁମେଣ୍ଟାରି ଛବି । ତାଞ୍ଜୋର ବା କୋଣାର୍କର ଟେମ୍ପଲ୍ ସ୍ଥାପତ୍ୟ ଶିଳ୍ପକଳା । ପରେଶବାବୁଙ୍କ ବାଁ ପାଖରେ "ନ୍ୟାସନାଲ୍ ହାଇସ୍କୁଲ୍"ର କଣ୍ଟ୍ରାକ୍ଟର ଜଣେ ବସିଥିଲେ ପାଖରେ । ଚିନିକି

ସେ ମଦରର ଏକ କୋଣରେ ଅର୍ଦ୍ଧନଗ୍ନ ବେଶରେ ସୁରକନ୍ୟାଟି ଛିଡ଼ା ହୋଇଥିବାର ଦେଖି ପାରନ୍ତି, କିନ୍ତୁ ସୀଙ୍କ ଦୃଷ୍ଟି ସେଥି ପ୍ରତି ଆକର୍ଷଣ କରିବାପାଇଁ ଏତେ ଜୋରରେ ଢୋଲରେ ଝଙ୍କାର ଦେଇ ଚିହିଁ ଦେଲା ଯେ, କୁହୁଚି କୁହୁଚି ହୋଇ ମହଲା ଗ୍ରାହକ ଦୈଥିରୁ ଛାଡ଼ି ପଡ଼ ଯାଉଥିଲେ।

ଫରଚାରେ ଓ ନିଜ ପକ୍ଷରେ ନାନା ମଜା ଦେଖି ଦେଖି ସରୋଜ ବାବୁ ପାଖରେ "ଷ୍ଟାଇଲିଷ୍ଟ" ଦେଇ ଦେଖି ପାରିଲେ ଅଲ୍‌ଟରନାଲ୍ କରେଣ୍ଟ୍‌ର ଏକ ଜୋୟାର। ତା' ପରେ ଦେଖିଲେ ହ୍ୱାଇବ୍ରିଡ କରେଣ୍ଟ୍‌ର ଗୋଟିଏ ବଡ଼ ଦୂର ନଡ଼ିଆ ଗଛର ଡାଳ ପତ୍ରରେ ଝୁର୍ ଦୋହଲିବାକୁ ଲାଗିଲାଣି।

'ଘୁ' କ୍ଲାବ ଫିଲ୍ମ "ଘର୍ ପ୍ୟାର୍ କିଯିଯେ ଯୋରା ହୈ" ସବସ୍ତ ପ୍ରଦର୍ଶିତ ହେବାପାଇଁ ସେନ୍‌ସର ବୋର୍ଡ଼ ଅନୁମତି ଦେଇ ପାରିଛନ୍ତି କି ନାହିଁ ପୁଣି ଟିକ୍-ଟପ୍।

ଘରଭିତରୁ ଏତେ ଜୋର ଗଣ୍ଡଗୋଳ ଉଠିଲା ଯେ, କାହାରି କଥା ବି ଶୁଭିଲା ନାହିଁ। କେତେ ସେକେଣ୍ଡ ଗଲେ, ଆଉ ରକ୍ଷା ନାହିଁ। ହ୍ୱାଇବ୍ରିଡ କରେଣ୍ଟ୍ ଅଫ୍; ଅଲ୍‌ଟରନାଲ୍ କରେଣ୍ଟ୍ ବି ଅଫ୍। ଦୁଇ କାରେଣ୍ଟ୍‌ର "ପ୍ୟାର" ବିଫଳ। ପୁଣି ସେଇ ଦୁଷ୍କାଳର ଅନ୍ଧକାର। "ଟେକ୍ ଦଉଆର ବି ଲାଇଟ୍" ଚିତ୍କାର କରି ଆକାଶ ପାତାଳ ଫଟାଇ ଦେଲେ ବି ଲାଇଟ୍ କାହିଁ?

ଏଇଥିପାଇଁ ଉଦନ୍ତ ହ୍ୱାଇବ୍ରିଡ କରେଣ୍ଟ୍‌କୁ ସରୋଜ ବାବୁ। ଥରେ ବଧ ହେଲା ତ ଆଉ କେହି ଅଧିକ ଜାଣିବ ନାହିଁ। ତା'ର ଯେତେବେଳେ ଇଚ୍ଛା ସେତେବେଳେ ଆସିବ, ତୁମେ ଚାହିଁ ବା ନ ଚାହିଁ।

ଏଥର କରିବେ କ'ଣ ମାର୍କେଟ୍‌ରେ ହାତମାରି ଦେଖିଲେ ଷ୍ଟାଣ୍ଡିକେଟ ଅଛି। ଧୀରେ ଧୀରେ ହାତୁଡ଼ି ଅଣ୍ଡାକ ପାଦପକାଇ ଆସିଲେ ଚେଲକୁ। ଅଙ୍ଗଣରେ ରେଡ଼ିଓ ଟିକେ ଲଗାନ୍ତି କି ନାହିଁ ଜୋର ପବନରେ

ହୋଟେଲର ସିଙ୍ଗଡ଼ା ପକଣ ହୋଇଯିବା ଶାଳ ପ୍ରଣାଳୀ ଉତ୍ପତ୍ତି ତାଙ୍କ ଗୋଡ଼ରେ ବାଡ଼େଇ ହୋଇଗଲା । ଚଉବଗିରେ ଦଶ ବୋଡ଼ଏ ହାତ ଯାଇ ଫାଟକ ପାଖରେ ଯାଇ ଦେଖିଲେ ରିକ୍ସା ଅଛି କି ନାହିଁ, କିନ୍ତୁ ଆଲୁଅର ବା ମଣିଷର କାହିଁ କିଛି ସନ୍ଧାନ ନାହିଁ ।

ଝଡ଼୍ ଝଡ଼୍-ଝଡ଼୍, ବଡ଼ ବଡ଼ ଟୋପରେ ହଠାତ୍ ପ୍ରବଳ ଅଧଘା । ସାଇରେନ୍ ବାଜି ଉଠିଲା 'ଏୟାରରେଡ଼୍'ରୁ ରକ୍ଷାପାଇଁ ଲୋକେ ଯିମିତ ବ୍ୟସ୍ତ ଚଞ୍ଚଳ ହୋଇ ଟ୍ରେଞ୍ଚ ଖୋଜି ବୁଲନ୍ତି ସରୋଜ ବାବୁ ବି ଟିପିନ୍ ଇଆଡ଼େ ସିଆଡ଼େ ଧାଁ ଦୌଡ଼ କରୁଥିଲେ; କିନ୍ତୁ ଆଶ୍ରୟସ୍ଥଳ କାହିଁ ? ଖାଲି ଲମ୍ବା ଲମ୍ବା ରାସ୍ତାଗୁଡ଼ା । ସିନେମା ଘର ଭିତରକୁ ପଶିବାକୁ ବେଳ କାହିଁ ? ବୋମା ପେଟେଲେକୁ ପଡ଼ ସାରିଥିବ । କଲିମିଟିଆ ଅନ୍ଧାରରେ ଅକସ୍ମାତ୍ ମୃଣ୍ଡ ଚକ୍ରି ତାକୁ ସ୍ଥାନଟିଏ ପାଇଲେ ଟିକେ ଘରର ଦରଜା ପାଖରେ, ପଇଁଠି ବୃଷ୍ଟି ନିବାରଣପାଇଁ ଲେଖାଥିବା × ଲେଖାଥିବା ସିନେମା ଟଙ୍କା ଶ୍ରେଣୀ ଥିଲା ତାହାର ତଳେ ।

ଘଣ୍ଟାର ଦୁଲୁ ଦୁଲୁ ବନ୍ଦ ହେଲା । ଅନ୍ଧାର ଭିତରେ ବି ଚାହିଁଲେ ଆକାଶକୁ । ସର୍ବବ୍ୟାପୀ ଅନ୍ଧକାର ନିଷ୍ଠୁର । ଯେତେ ବେଶୀ କଳା ସେତେ ବେଶୀ ଆଲୁଅ. ଯେତେ ବେଶୀ ପ୍ରକାଶ ଶକ୍ତି । ସେଥିପାଇଁ ଲୋକେ କାଳୀପୂଜା କରନ୍ତି—ଶକ୍ତି ଓ ଅନ୍ଧକାରର ଏକ ମହାନ୍ ରୂପ ଏଇ କାଳୀ । ଏଇ ରାତ୍ରିର ଗୋଟାଏ ମେଘର ବଜ୍ର କଳକଳକୁ ବଧବା କରିଥିଲା । ଏଇ କଳାରଙ୍ଗର କାଳୀ ସରୋଜବାବୁଙ୍କ ସ୍ତ୍ରୀକୁ ବି ପାଗଳୀ କରିଥିଲା । ତାଙ୍କ ସ୍ତ୍ରୀ କଳା ମେଘ ଦେଖିଲେ ଚୂଳ ଗୁଡ଼ ନାଉଥିଲେ ପରା ।

ଝଲ୍ ! ଝଲ୍ ! "ଜଳିଗଲା କବା ଅନନ୍ତର ସର୍ବ ହାଟବେଳୀ ବାଟେ" । ଅନ୍ଧାର ଅନ୍ଧକାରର ପ୍ରତିଷ୍ଠା ଖୋଜିଗଲା ବୋଧହୁଏ, ସ୍ୱର୍ଗ ରାଜ୍ୟଟା ତେବେ କିଏ ନେବ !

ଆଖିରୁ ବର୍ଜିଲ ର ଜଳଛିଟା, ନିଜରୁ ନାହିଁ ସରୋଜ ବାବୁ ଚମକି ହାଉଳି ଖାଇଗଲେ । ଭଏ ଯେପରି ତାଙ୍କୁ ଜୋରରେ କୁଣ୍ଢାଇ ଧରିଲା ।

"କ୍ଷମା କରିବେ, ଝିଲ୍‌କୁ ମୁଁ ଖୁବ୍ ଡରେ ।"—କ୍ଷୀଣସ୍ୱର ।

"ମୁଁ ତ ବଡ଼ ଡରେ ।" ପଟ୍ଟନାୟକବାବୁଙ୍କ ପାଟିରୁ ଆପେ ଆପେ ବାହାରିଲା । 'କିଏ ଆପଣ ? ସେଇ କୁଣ୍ଢାଇ ଧରିବା ପୁରୁଣା ରୋଗଟା ମୋର ବଢ଼ିଯାଇଛି ସେହି ଦିନରୁ । ମୋତେ ଆପଣ ଚିହ୍ନନ୍ତି ।" ଦନ୍ତେ ରହିଯାଇ "ମୁଁ କମଳା ।"

"କମଳା…? ଆଶ୍ଚର୍ଯ୍ୟ ! ତୁମେ ଏଠି…?"

"ଆଜି ଆସିଛି । ଇଣ୍ଟରଭ୍ୟୁ ଥିଲା ।"

"ଇଣ୍ଟରଭ୍ୟୁ ? ତୁମର… ?"

"ଗ୍ରାମସେବିକା ପୋଷ୍ଟ ।"

"ମୋ କୁଆ ପିଲାଙ୍କ ସେବିକା ପୋଷ୍ଟ ଏଯାବତ ଖାଲି ପଡ଼ିଛି । ଘରର ସେବା ଛାଡ଼ି ଗ୍ରାମର ସେବାକୁ ବାହାରି ପଡ଼ିଲ କିମିତି ?"

"ଘରେ ବସି ବସି କ'ଣ କରିବି ? ବାପା ମାଆ କହିଲେ, ଗାଁ-ଲୋକେ ବି କହିଲେ ।"

"ତେବେ ତୁମେ କେଉଁଠୁ ଫେରୁଥିଲ ? ମୁଁ ଠିକ୍ ଅନୁମାନ କରିଥିଲି । ଠିକ ଏ ମୋଟା ହୋଇଯାଇଛ । ରଙ୍ଗ ବି ବଦଳି ଯାଇଛି । ଖୁବ ସୁନ୍ଦର ଦିଶୁଛ । ଅଚ୍ଛା, ସେ ଡ୍ରାଇଭରଟା କିଏ ?"

"ସେ ଡ୍ରାଇଭର ନୂଆ । ବ୍ଲକ୍‌ର ଜଣେ ଚପ୍ରାଶି ଲୋକ । ଆଜ କେଉଁଠି ତାଙ୍କର 'ମିଟିଂ' ଅଛି । ଫେରିଲାବେଳେ ମୋତେ ନେଇଯିବେ ।"

"ତୁମେ ତ ନୂଆ ବୁଲକଟ ଖୋଜୁଛ । ବ୍ଲକ୍ ଲୋକଙ୍କ ସହିତ ଚିହ୍ନା ହେଲ କିପରି ?"

"ମୁଁ ଗାଁର କନ୍ୟା ସମିତିର ସେକ୍ରେଟାରୀ ।"

"ସେ ଡ୍ରାଇଭରଟା କ'ଣ ବି. ଡି. ଓ., ସବଡେପୁଟି, ଚୋରମାନ୍ ନା ଡି. ପି. ଅର୍. ଓ. ?"

"ସେ କଥା ଜାଣି ଲାଭ କିଛି ନାହିଁ, ହରେନ ବାବୁ ! ଯେ ଘର ଗୃହ ବୃଜନଗ ଫେରିବ କୁ ଥରେ ଦେଖିବ ବାହାରିବ ତା'ର ବାର ଉତ୍ତର କ'ଣ ? ମାନ ସମ୍ମାନ କ'ଣ ? ଆପଣ ମୋତେ ଭୁଲ୍ ବୁଝନ୍ତୁ ନାହିଁ । ଅପଣଙ୍କୁ ଓହ୍ଲାଇ ଅସିବା'ର ମୁଁ ଦେଖିଛି, ପଛେ ପଛେ ଅସିଛି କେବଳ ପଦେ କଥା କହିବାପାଇଁ ।"

"ସତେ ! ଶୁଣ ଏତ ସ୍ତ୍ରୀବାପାଇଁ ବଳ । ଛଅମାସ ହେଲା ତୁମର 'ହଁ' ପଦକପାଇଁ ଅପେକ୍ଷା କରିଛି । ମୋର ପ୍ରସ୍ତାବଟା ତୁମ ବାପା ଶୁଣିଛନ୍ତି ?"

"ହଁ—ବାପା ମା' ଉଭୟେ ଶୁଣିଛନ୍ତି । ମୋ କଥା ତ ମୁଁ କହୁ-ଦେଉଛି ଅପଣଙ୍କୁ । ଅପଣ ମୋର ବାପାଙ୍କ ପାଖରେ ଠିଆ ହୋଇଛନ୍ତି । ମୁଁ ଅପଣଙ୍କୁ କେବେ 'ନା' କହୁନାହିଁ, କହିବ ନାହିଁ ମଧ୍ୟ । ଜାତକଟା ମେଳ ହୋଇଥିଲେ ଆମେ ବର୍ଷେ ସାରଳାବନ କଟାଇ ଥାଆନ୍ତୁ ଏକା ସାଙ୍ଗରେ । ଏବେ ବି ମୋର ସେଇ ଇଚ୍ଛା । ତେବେ—"

ଏତେ ଜୋରରେ ଝଟକାଟାଏ ମାରିଲା ଯେ, ହରେନ ବାବୁ ଅମାନ ଖୁବ୍ ଜୋରରେ କମଳମାକୁ କୁଣ୍ଢାଇ ପକାଇଲେ । ପୂର୍ଣ୍ଣ ବେଗରେ ଟଙ୍କାର ସମ୍ଭାଳିବା ପାଇଁ ଆଉ କମଳମାକୁ କୌଣସି କାଠ ଖଣ୍ଡ ବା ପଥରର ଅଶ୍ରୟ ନେବା ଦରକାର ହେଲା ନାହିଁ । କଥାର ଛିଅ ଦୁହେଁଯାକ ଭୁଲିଗଲେ । ଠିକ୍ ଠିକ୍ ହୋଇ କେତେ ସେକେଣ୍ଡ କଟିଗଲା । ବାହୁ ପାଶ କୋହଳ ହେଲା । ଅଦ୍ଭୁତ ବନ୍ଧ ! ମୁହୂର୍ତ୍ତକେ ଚେତ୍ନାରେ ।

ତୁମେ ହେବନା, କ'ଣ ? ଏ ଅାଉକୁ ଟେକାଏ ଦୁଃଖ ଅସ, ଲୁଗାଟାକୁ ଠିକ୍ ଏ ଟେକି ଧର । ଭିଜି ଯାଉଛି । ଏଥରେ କମଳମା, ତୁମେ କେତେ ଝଟକାଏ ସମ୍ଭାଳି ପାରିଲ ?"

'ଦୁହେଁ ନୀରବ । ଘନାନ୍ଧକାରରେ ଚଉଷ୍ଠିବର ଅନ୍ତରାତ୍ମା ଦୁହିଁଙ୍କ ଯେମିତି ପ୍ରାଣେଶ୍ୱରୀ ଦିଇଯାଉଛନ୍ତି ଯାନଯାତ୍ରର ଶେଷ ପର୍ଯ୍ୟନ୍ତ ଆଗାମୀ ଜୀବନ ଉପରେ ଲକ୍ଷ୍ୟ ରଖି ।

କେତେ ସମୟ ପରେ ଲଜ୍ଜା ଭଙ୍ଗା ଗଳାରେ କଲ୍ୟାଣୀ ନୀରବତା ଭଙ୍ଗ କରି ପୁଣି କହିଲା, "ସରୋଜବାବୁ, ପଡ଼ ଆକାଶ ଏକାକାର ହେଇ ଉଠିବ ଏବଂ ଜଣେ କେଉଁ ପଥ ପଚାରିବ ମୁଁ ଆପଣଙ୍କର କିଏ ? ଆପଣ କଣ ଜବାବ ଦେବେ ?" "ମୁଁ ଅଲଗା ଦ୍ୱିଧା ନ ରଖି ସିଧା ସଳଖ କହିବି, ଏ ମୋର ସଂସାରର ସ୍ତ୍ରୀ କଲ୍ୟାଣୀ । ପଡ଼ ଆକାଶ ଜଳଉଠେ ଏବଂ ପଥ କେଉଁ ଠିକ୍ ସେମିତି ପ୍ରଶ୍ନ ତୁମକୁ ପଚାରେ,, ମୁଁ ତୁମର କିଏ', ତୁମର କ'ଣ ସାହାସ ଅଛି କହିବାର 'ଏ ମୋର ସ୍ୱାମୀ ବୋଲି କୁହ ?'

"ମୁଁ ସେ'ର ଜବାବ ଦେବି···

ଦପକରି ଷ୍ଟାରକୁଡ଼ କାରେଣ୍ଟ ଜଳିଉଠିଲା । ସରୋଜବାବୁ ଷ୍ଟାରକୁଡ଼ କାରେଣ୍ଟକୁ ଡରନ୍ତି ଏଇଥିପାଇଁ—ଯେତେବେଳେ 'ଅଫ୍' ହେବା କଥା 'ଅନ୍' ହୁଏ ।

କଲ୍ୟାଣୀର ନିଶ୍ୱାସ ଅଟକି ରହିଲା । ସେ'ଜଣେ ନାରୀ ହେଇ ପରପୁରୁଷର ନିର୍ଜନ ଦୁର୍ବଳତାକୁ ମୁହଁ ଉପରେ ହୃଦୟ ଦେଲେ । ଅଜାଣତରେ ପୁଣି ତା'ର । କପାଳର କେଶଗୁଚ୍ଛକୁ ଯଥାସ୍ଥାନକୁ ନେଇ ସଜାଇ ପିଠି ଉପରକୁ ଉଠିଗଲା କଲ୍ୟାଣୀ ଓ ଗମ୍ଭୀର ହୋଇ ଅଫିସ ଖାତାକୁ ଦୂରେଇ କଲା, "ସିନେମା ପରେ" ପଢ଼ିବୁ ହୋଉ

ଏଥର ଘର ଭିତରେ ଷ୍ଟାରକୁଡ଼ କାରେଣ୍ଟରେ ଜଳିଲା ଜଣ, "ସବ୍ ଠାରୁ କମିଯିବ ଦେଖା ହେ" । କିନ୍ତୁ ସେମାନେ ସେଥିପାଇଁ ହିଁ ସ୍ୱୀକାର କରି ଦେଉଛନ୍ତି ଯେ ତେବେ ଅସମ୍ଭବ୍ ଟେବୁଲ ଉପରେ 'ଚାପ' ଲାଗିଥିଲା ଟେବୁଲ ଉପରେ ଖୋଲି ସରୋଜବାବୁ ଦୁଇହାତ କହାଇଦେଲେ । ଏଥର କେଉଁଠାରେ ବି ଦେହର ସ୍ପର୍ଶ ଖୋଜିଲା ନାହିଁ ।

ଚକୋଲେଟ୍ ରଙ୍ଗର ପରଦାଟା ଧୀରେ ଧୀରେ ଘୁଞ୍ଚି ଯାଇ ପରଦାର "The End" ଅକ୍ଷରେ ଢାଙ୍କିଗଲା । ସରୋଜବାବୁ ବାହାରକୁ ଆସିଲେ, ଅପେକ୍ଷା କଲେ, ଖୋଜିଲେ; କିନ୍ତୁ କମଳାକୁ ପାଇଲେ ନାହିଁ । ମନେ ମନେ ଭାବିଲେ କମଳା ବୋଧହୁଏ ତାଙ୍କୁ ଅପେକ୍ଷା କରିଥିବ, ଖୋଜିଥିବ,' ପାଇ ନ ଥିବ ।

ପାର୍ଶ୍ୱସ୍ଥ ଗୁଣ୍ଡ ଚକ୍ରମୂର୍ତ୍ତି ଟେଲବେନ ଦେଖିଲେ ଗୁଣ୍ଡାର ନରମ ଗୁଣ୍ଡାଟାକୁ ଯେପରି ଚିଳ ଯାକି ଧରି ନିଏ କମ୍ପାଉଣ୍ଡ ଦେଇ ଯାଉଛି ସେହି ଏକ ଲକ୍ଷ୍ୟସ୍ଥାନ ପଥରେ କୋଟାଏ ରକ୍ତଶୂନ୍ୟ ଡାକ୍ତରକୁ ଘେନି ।

ପୁଣି ଯେଉଁ ସେଇ । ଏଥର ଏଇ ଡ୍ରାଇଭରଟା ନେଇ ନେଲେ ପାର୍ଟ—ଦୁସ୍ମନର ପାର୍ଟ ନେଲା । କମଳାଙ୍କ ଦରିଆଙ୍କର, କୁନ୍ତଳା ସରୋଜ—ବର୍ତ୍ତମାନ କମଳାଙ୍କ, ସରୋଜ ସବୁ 'ଫୋର୍'ରେ ନେଇ ନେଲା । ସରୋଜବାବୁଙ୍କୁ ଜଣାଗଲା ସେ ଯେପରି ଆଜି ଅରେ ବହିର୍ଗତ ହେଲେ, ସେ ଜାଣିବାକୁ ବ୍ୟସ୍ତ କମଳା କ'ଣ ଆଜି ଅରେ ବାଧ୍ୟ ହେଲା ନେଇ କି ଭାବିଥିବ ?

ଏବେ ସରୋଜବାବୁ ଅଭିଭୂତ କରେଇଁକୁ ଭଲ ପାଇଲେ । ସବୁ ସିନେମା ଦେଖନ୍ତି । କେବେ ଅଭିଭୂତ କରେଇଁ ଅଣ୍ ଫ୍ରୋଲଟିକ—କାଲେ କମଳା ଆସିଥିବ ।

---

# ଅର୍ଦ୍ଦଳି

ସେଦିନ ଓପର ମହଲ କଲେକ୍ଟରେଟ୍‌ରେ ଜିଲ୍ଲା ପରିଷଦର ଏକ ସ୍ୱତନ୍ତ୍ର ବୈଠକ ବସି ଯାଇଥାଏ । ଚେୟାରମ୍ୟାନ୍, ମେମ୍ବରମାନେ ଜିଲ୍ଲାର ଅଫିସରମାନେ, ଗଣ ଜଣା ହୋଇ ବ୍ୟସ୍ତ ଗଡ଼ୁଛନ୍ତି । କେବଳ ହରିବନ୍ଧୁ ଦଣ୍ଡପାଟ ବାରଣ୍ଡାର ବେଞ୍ଚଟାରେ ବସି ଚୋପିର ଗୁଡ଼ଗୁଡ଼ାକ ଟାଣୁଥାଏ । ଆଜି ସେ ଯେଉଁ ପୋଷାକଟି ପିନ୍ଧିଛି ତାହା ମାମୁଲି ନ ହେଲେ ବି ଅତି ବଢ଼ିଆ ନୁହେଁ । ସବୁଠୁଁ ଦାମିକା ପୋଷାକଟି ସେ ସାଇତି ରଖିଥାଏ କମିଶନର ବା ମନ୍ତ୍ରୀମହୋଦୟଙ୍କ ଗସ୍ତବେଳକୁ । ସବୁବେଳେ ଦୁଆରେ ଝକ୍ ଝକ୍ କରେ ଓ କଦାପି ପିମିଡ଼ି ଦାଗ ବା ଭୁଲରେ ଛିଣ୍ଡା ନ ହୋଇ ଆଲପକା ଅଥବା ପାଷାଣରେ କଉଁ ଧାତୁରେ ତିଆରି ହୋଇଛି ।

ଦଣ୍ଡପାଟ ପୋଷାକର ମହତ୍ତ୍ୱ ଓ କାରବାର ଜାଣେ । ତେଣୁ ସେ ପୋଷାକ ପିନ୍ଧେ ଖୁବ୍ ଯତ୍ନ, ଆଗ୍ରହ ଓ ଆତ୍ମସନ୍ତୋଷ ସହିତ । କାରଣ ସେ ବେଶ ବୁଝେ ତା'ର ଚାକିରିର ମର୍ଯ୍ୟାଦା ଓ ସ୍ଥାନ । ସମଗ୍ର ଜିଲ୍ଲାର କଲେକ୍ଟରଙ୍କ ଅର୍ଦ୍ଦଳି ସେ । ତାର ମୁଣ୍ଡ ଉପରେ ଜାଣିଛି ପତାକା ଉଡ଼ୁଛି । ଘରର ଝକଝକିଆ ମାର୍ବଲ ଚଟାଣ ଓ ଜି ଚୀନା ମିସ୍ତ୍ରୀ ତିଆରି ଚକଚକିଆ ଫର୍ଣ୍ଣିଚର ସହିତ ତାକୁ ଝକଝକିଆ ପୋଷାକରେ ମେଳ ନ ରହିଲେ ଚଳିବ କିମିତି ? ତା'ଛଡ଼ା ବୁଝିଲା ଦାନ୍ତର ବଡ଼ଲୋକ, ଅଫିସର ଧନିକଶ୍ରେଣୀ କଲେକ୍ଟରଙ୍କ ପଦକୁ ସମ୍ଭ୍ରମ । ଗଲା ଷୋଳବର୍ଷ ଧରି ରଜାମହାରାଜାଙ୍କ ଅମଳରୁ ସେ ବର୍ଷକୁ ବର୍ଷ ସେହି ପୋଷାକ ତାକୁ

ଟ୍ରିଂ—ଟ୍ରିଂ—ଟ୍ରିଂ । 'ଟେଲିଫୋନ'—

ଏକାବେଳକେ ଘଣ୍ଟି ଆଜି ଥାନ ।

'ହଜୁର'—ଟେଲିଫୋନରେ ଉତ୍ତେଜିତ ଦଣ୍ଡପାଟ ସ୍ୱରକୁ ଚିହ୍ନିଲ ।

ଡି, ଏମ୍, କୁ ଫୋନ ଦେଇଥିବାର ଦଣ୍ଡପାଟ ଦେଖିଲା ଟେବୁଲର ଠିକ୍ ସାମନାକୁ ବସିଛନ୍ତି ଦୁଇଟା ଶାଗୁଣା—ଅଫିସ ସୁପରିଣ୍ଟେଣ୍ଡେଣ୍ଟ ଆଉ ହେଡ ଆସିଷ୍ଟାଣ୍ଟ ।

'ଓହୋ ! ଏଇ ଦୁ'ଟା ବସିକରି ସାହେବକୁ ଉଠକାଇଛନ୍ତି ।" ଦଣ୍ଡପାଟ ଏଇକଥା ଅନୁମାନ କରି ମନେ ମନେ ହସିଲା ହେଲା, କିନ୍ତୁ ସେ ଦୁହିଙ୍କି ମଧ୍ୟ ଜୁହାର ହେଲା ।

"ଟିକିଏ ସାମନାକୁ ଆସ—" ଡି, ଏମ୍, କହିଲେ ।

କଲେକ୍ଟରଙ୍କ ଆଗରେ ଯେଉଁ ବଡ଼ ଟେବୁଲଟା ପଡ଼ିଛି ସେଇଟା ମହାରାଜା ସାହେବଙ୍କର ଥିଲା । ବୁଢ଼ା ଡି, ଏମ୍, କାଉନ୍ସିଲ ହଲରୁ ଆଣି ଏଠି ପକାଇଥିଲେ । ଦଣ୍ଡପାଟ ପୁଣି ଆସି ସେମାନଙ୍କର ଠିକ୍ ମୁହାଁମୁହିଁ ହୋଇ ଛିଡ଼ା ହେଲା ।

ସାହେବ, କଥାଟା କ'ଣ ? ସେଦିନ ତ ଏଇ କୋର୍ଟରୁ ମାଲଦାର ନଥିର ବିକ୍ରିଟା ଆଣିଥିଲେ । ହଁ, ନ ହ'ଲେ କଣିକି ? ଖୋଦ କଲେକ୍ଟରଙ୍କ କାମ କହିବ ଅଥଚ ଦିନ ଦୁଇଟାରେ ଫାଣ୍ଡିଆ ଖାଇ ଆସିବ ! ଏଇଟା ସେ କଲେକ୍ଟରେଟ୍ ।

ଡି, ଏମ୍, ଙ୍କ ଆଖିରେ ତାଙ୍କର ତୀକ୍ଷ୍ଣ ଦୃଷ୍ଟି । କିନ୍ତୁ ଅନ୍ୟ ଦୁଇଜଣ ଡିହିଙ୍କ ମୁହଁରେ ଯୋଡ଼ ଦେଖିଛନ୍ତି ନିମିତ୍ତ କିଛି ଜାଣନ୍ତୁ ନାହିଁ ।

ସେ ହ'ଣ ବୁଢ଼ା ଟମ ଟେବୁଲ ଉପରେ ଉପଲବ୍ଧ ଲଗି ରହିଛନ୍ତି । ଅଜି ନିହିତ ସାହେବ ଚାଷରେ ମୋ ତେଷ୍ଟରେ କିଛି ନା କିଛି ଥର କହି,

ତାକୁ ଖଣ୍ଡା ଖଣ୍ଡ କରି ବଧ କରିବେ ମୋ ବନ୍ଧୁକରେ କିଛି ଗୋଟାଏ କରିବା ପାଇଁ—' ଦଣ୍ଡପାଟ ଗର୍ଜିଲା । କିନ୍ତୁ ତା'ର ଦୁର୍ଦ୍ଦାନ୍ତ ମୂର୍ତ୍ତିରେ ଉତ୍ତେଜନାର ଲକ୍ଷଣ ଆଦୌ ଫୁଟିଲା ନାହିଁ ।

ସିଧା ସଳଖ ହେଇ ଛିଡ଼ା ହୋଇ ରହିଲା । ଓଡ଼ିଆ ଲୋକ ସେ ନୁହେଁ । ବଡ଼ ବଡ଼ ରାଜାମହାରାଜାଙ୍କ ଅମଳରୁ ସେ ରାଜବାଟୀରେ ଅର୍ଦ୍ଦଳି କାମ କରି ଆସିଛି । ତାର ବୃଦ୍ଧଜନ ଚେହେରାକୁ ଜାଣିନଥିବା ଲୋକ ନାହିଁ । ପିଲାଦିନେ ସେ ଛଅପିଲା ହୋଇ ଉପର ଧାଡ଼ିରେ ନାଚୁଥିଲା । ଟେର ରାଜତରାପ୍ ସାହେବ ତାକୁ ଗୋଲ ବାରଣ୍ଡାରେ ରଖାଇଥିଲେ । ଦଣ୍ଡପାଟ ଲମ୍ବା ଚଉଡ଼ା ପଅଢ଼'ଭଆ ମଣିଷଟାଏ । ରଙ୍ଗରେ ତା'ର ଚେହେରା; ଉଜାଡ଼ରେ ମ ହେଲେବି ଯାହା ସୁଅଙ୍ଗରେ ଲେଡ଼ିମାନେ ରଜା ବା ମନ୍ତ୍ରୀ ଚାର୍ଟ କରନ୍ତି ଅନ୍ତତଃ ଡାକପଡ଼ି । ଲୋକଟି ବୁଦ୍ଧିମାନ୍, କର୍ମକୁଶଳ, ସର୍ବୋପରି ନିଷ୍କଳଙ୍କ ଚରିତ୍ର ।

କଲେକ୍ଟର ଆରମ୍ଭ କଲେ, 'ଦଣ୍ଡପାଟ, ବଡ଼ ଦୁଃଖର କଥା ତୁମର ଗୋଟିଏ ଗୁରୁତର ଅଭାବ ଓ ଦୁର୍ବଳତା ଆଜି ଆମର ନଜରକୁ ଆସିଛି । ଆମେ ସମସ୍ତେ ଅବଶ୍ୟ ତୁମର କାମର ତାରିଫ କରୁଛୁ । ତୁମ କାମ ବିଷୟରେ ଆମର କିଛି କହିବାର ନାହିଁ, ତେବେ—' ।

ସୁପରିଣ୍ଟେଣ୍ଡେଣ୍ଟ ଓ ହେଡ଼ ଏସିଷ୍ଟାଣ୍ଟ ଉଭୟେ ମୁଣ୍ଡଟୁଙ୍କାଇ ସାହେବଙ୍କ ପ୍ରସଙ୍ଗ ଅବତାରଣାର ରୀତିକୁ ପ୍ରଶଂସା କଲେ ।

'ତେବେ ବଡ଼ ଦୁଃଖର କଥା ଆଜି ଆମ ନଜରକୁ ଆସିଛି ତୁମେ କୁଆଡ଼େ ଲେଖାପଢ଼ା ଆଦୌ ଜାଣିନ । ବଡ଼ ବିସ୍ମୟର କଥା !'

ସାହେବଙ୍କ ଏ କଥାରେ ଦଣ୍ଡପାଟ ମୋଟେ ବିଚଳିତ ନ ହୋଇ କହିଲେ, ''ହଜୁର, ବୁଢ଼ା କଲେକ୍ଟର ତ ଏ କଥା ଜାଣିଥିଲେ, ସେ କହୁଥିଲେ ଲେଖାପଢ଼ି ନ ଜାଣିଲେ ବି କିଛି କ୍ଷତି ନାହିଁ । ଦୁନିଆରେ ଆଜିକାଲି ଲେଖାପଢ଼ି ଉପରେ ଅଯଥା ଖୁବ୍ ବେଶୀ ଜୋର ଦିଆଯାଉଛି ବୋଲି ବରଂ ସେ କହୁଥିଲେ ।''

'ବଡ଼ ଆଶ୍ଚର୍ଯ୍ୟ କଥା !' ତୁମେ ରାଜଧାନୀ ଅ.ଉ କଲେକ୍ଟରେଟ୍‌ରେ ଷୋହଳ ବର୍ଷ କାମ କଲଣି ଅଥଚ ଲେଖାପଢ଼ା ଶିଖିନାହିଁ ?'

'ହଜୁର, ମୁଁ ଦଶବର୍ଷ ବେଳୁ ଚାକିରୀରେ ପଶିଛି । ମୋତେ ପ୍ରଥମେ ଜାତକେଶ୍ୱର ମନ୍ଦିରର ପୂଜାରୀ ଅକ୍ଷର ଶିଖାଇବାକୁ ଚେଷ୍ଟା କରିଥିଲେ କିନ୍ତୁ ପାରିଲେନି । ତା'ପରେ ଏ କାମ ସେ କାମରେ ବ୍ୟସ୍ତ ରହି ମୁଁ ପଢ଼ାପଢ଼ି କରି ପାରିନାହିଁ । ହେଲେ, ଲେଖାପଢ଼ା ନ ଜାଣି ମୁଁ ତ କେବେ କିଛି ଅଡୁଆ ଅସୁବିଧାରେ ପଡ଼ିନି । ମୋ'ର ଧାରଣା ଆଜିକାଲି ପିଲା ଗୁଡ଼ାକ କିଛି ଦରକାରୀ କାମ ନ କରି ଛଡ଼ା ପଢ଼ିରେ ଖାଲି ଗୁଡ଼ାଏ ସମୟ ନଷ୍ଟ କରୁଛନ୍ତି ।'

"ଖବରକାଗଜ ପଢ଼ କିମିତ ?" ସୁପରିଣ୍ଟେଣ୍ଡେଣ୍ଟ ପଚାରିଲେ ।

'ଚିଠିପତ୍ର ଲେଖ କିମିତ ?'—ହେଡ୍ ଏସିଷ୍ଟାଣ୍ଟ ଯୋଡ଼ିଲେ ।

'ଏ ଦୁଇକାମ ପାଠ ନ ପଢ଼ିଲେ ବି କରିହୁଏ ଆଜ୍ଞା ! ଆଜିକାଲି କାଗଜର ଖାଲି ଛବି ଦେଖି ଖବର ଅନ୍ଦାଜ ସବୁ ଜାଣି ହେଉଛି । ତା ଛଡ଼ା ପୁଅ ମାଇନର ପଢ଼ିଲାଣି, ତାକୁ କହିଲେ ସେ ଚିଠିପତ୍ର ଲେଖି ଦେଇ ପାରୁଛି । ସେ ବହୁତ ପାଠ ପଢ଼ିଗଲାଣି ।'

ଦଣ୍ଡପାଟର ଏକଥା ଶୁଣି ତିନିଜଣ ଯାକ ବିଜ୍ଞ ଅଫିସର ସ୍ତମ୍ଭିତ ହେଲେ ।

'ଗୁଡ଼ ସେ କଥା ଦଣ୍ଡପାଟ ! ସୁପରିଣ୍ଟେଣ୍ଡେଣ୍ଟ ଓ ହେଡ୍ ଏସିଷ୍ଟାଣ୍ଟ ସହିତ ମୁଁ କଥାବାର୍ତ୍ତା କରି ଏଇ ନିଷ୍ପତ୍ତି କରିଛି, କଲେକ୍ଟରେଟ୍ ପତା ପଢ଼ି ଜାଣି ନଥିବା ଅର୍ଦ୍ଦଳି ରଖାଯିବେ ନାହିଁ ।'

ଦଣ୍ଡପାଟର ମୁହଁକୁ ଅନୁରକ୍ତ ଭଳି ଚାହିଁ ଜଣାଇଲେ । ତଥାପି ସେ ନୀରବ ।

'ଆମକୁ ଭୁଲ୍ ବୁଝିବନି ଦଣ୍ଡପାଟ । ମୁଁ ପୁଣି ଖୋଲି ଖୋଲି ସାଫ୍ ସାଫ୍ କହୁଛି ତୁମ ଚରିତ୍ରରେ ଆମର କିଛି ଅଭିଯୋଗ ନାହିଁ, ତୁମ

କାମରେ ଗଲତ ବା ଫେଲିତ ହ ନାହିଁ, ତୁମର ଯୋଗ୍ୟତା ଓ ଚରିତ୍ର ସମ୍ପର୍କରେ ମଧ୍ୟ ଆମର ଧାରଣା ଉଚ୍ଚ । କିନ୍ତୁ ତୁମର ଏଇ ଶୋଚନୀୟ ଅଭାବ ହେତୁ ତୁମେ କେତେବେଳେ ଯେ, କଣ ଭୁଲକରି ବସିବ ତାର ଠାବ୍ରିକ୍ ଆମେ କେହି ନେଇ ପାରିବୁ ନାହିଁ । ନୀତି ଓ ସାଧାରଣ ବୁଦ୍ଧି ଦୃଷ୍ଟିରୁ ଏ କଥା କହିବାକୁ ମୁଁ ବାଧ୍ୟ ହେଉଛି ।'

"ଅଚ୍ଛା, ଚେଷ୍ଟାକଲେ ତୁମେ ତ ପଡ଼ାଶୁଣା କରି ପାରନ୍ତ ?" ଟିକଏ ଦୟାର୍ଦ୍ର କଣ୍ଠରେ ହେଡ ଏସିଷ୍ଟେଣ୍ଟ ପଚାରିଲେ ।

'ନାଁ, ସାର୍, ସେକଥା ଆଉ ହବନି । ପିଲାଦିନରେ ଯେଉଁ ଧାଡ଼ିଗୁଡ଼ା ମୁଣ୍ଡ ଭିତରକୁ ପଶିଲା ନାହିଁ, ବୁଢ଼ାକାଳରେ ସେ ସବୁ ପଶିବ କିମିତି ?'

କଲେକ୍ଟର କହିଲେ 'ଦେଖ ଦଣ୍ଡପାଠ, ଆମେ ଏଇଥି ମଧ୍ୟ ଠିକ୍ କରିଛୁ ତୁମକୁ ତିନିମାସ ନୋଟିସ ଦବାପାଇଁ । ଏ ଭିତରେ ତୁମେ ଯଦି ଲେଖାପଢ଼ା ଶିଖି ପାରିଲ ତେବେତ ଭଲ, ନ ହେଲେ—ସେ ସିଧା କଥା ।'

ଉପରନ୍ତୁ ଦଣ୍ଡପାଠ ନୂଆ ଓ, ଏମ୍, ର ମତଲବ ବେଶ ବୁଝି ସାରିଥିଲ, ଲୋକଟା ଭଲ, କିନ୍ତୁ ନିଜର ସ୍ୱାର୍ଥ ପାଇଁ ଏହାକୁ ବାହୁ ଦରକାର ବୁଝି କରିଛି । ତା' ଛଡ଼ା ଏ ବୁଢ଼ା ଦଣ୍ଡ ତା' ମୁଣ୍ଡ ଚଗାଡ଼ିବା ପାଇଁ ବଳବନ୍ତ ଲଗିଛନ୍ତି ।' ଦଣ୍ଡପାଠ ନିଜ ଯୋଗ୍ୟତା ଜାଣେ । ସେ ଅଉ ସମ୍ଭାଳନ୍ତା କେତେ ?

'ହଜୁର, କ୍ଷମା କରିବେ । ଏ ବୁଢ଼ାଶୁଆ ଆଉ କୃଷ୍ଣ ନାମ ଶିଖି ପାରିବ ନାହିଁ । ଲେଖାପଢ଼ା ନ ଜାଣି ଜୀବନ ବିତିଗଲାଣି । ସୁରୁଖୁରୁରେ ଭଗବାନ ମୋତେ ଯେଉଁଠି ଯେଉଁଥିରେ ଲଗାଇଛନ୍ତି ମୁଁ ତାହା କରୁଛି, ପାରୁଛି । ତେବେ ଯାହା ହୋଇନି ତା' ପାଇଁ ଏବେ କଷ୍ଟ ଦେବିଟ କାହିଁକି ?'

"ତାହାହେଲେ ତୁମକୁ ଚାକିରି ଛାଡ଼ିବାକୁ ପଡ଼ିବ ।"

"ସେଥିପାଇଁ ମୁଁ ପ୍ରସ୍ତୁତ । ହଜୁର ଯେବେ ହୁକୁମ କରନ୍ତି— ।"

କଲେକ୍ଟର ଚାଲିଯିବା ପରେ ଦଣ୍ଡପାଟ ଫାଇଲପତ୍ର ସଜାସଜି କରି ଆଲୁଅ ଲିଭାଇ ଦେଇ ଅଫିସରେ ତାଲ ଦେଲେ ଏବଂ ଯେଉଁ କାର୍ଯ୍ୟ ଓ ଧୈର୍ଯ୍ୟ ଅବଲମ୍ବନ କରି ଜୀବନର ଏତେ ମାତ୍ରାଏ ସମ୍ମାନ ନେଇଥିଲେ ତାହା ଆଜି ରଖି ପାରିଲେ ନାହିଁ । ମନ୍ଥର ଗତିରେ କଲେକ୍ଟରେଟ୍ ଚେମ୍ବରକୁ ଯାଇ ପୋଷାକ ପତ୍ର ବାକ୍ସ ଭିତରେ ରଖିଦେଲେ । ବାହାରପଟେ ଥିବା ସେ ଏବଂ କଲେକ୍ଟରେଟ୍ କୋଠାକୁ ଛୁଇଁ ଦେଇ ମନେ ପକାଇଲେ କେତେ କେତେ ପଲିଟିକେଲ ଏଜେଣ୍ଟ, ଗଭର୍ଣ୍ଣର, କମିଶନର ଆଉ କେତେ କେତେ ଦରବାର କନ୍ଫାରେନ୍ସ, ସର୍ବସମେତ ସେ ଦେଖିଛନ୍ତି ତାରି ଭିତରେ । ମୁଣ୍ଡପୋଡ଼ା ସମସ୍ୟା ଲାଗିଥାଏ । ଗୋଟେଇ ପାଖେ ଚଉହଦ୍ଦି ଭିତରେ ଯେଉଁ ରାସ୍ତା ଧରିବା କଥା ତାହା ଛୁଇଁ ଦେଇ ଧରିଲେ ଛାଡ଼ିବା ସହଜ । ପ୍ରଶଂସା ବଡ଼ ଶୀର ଜଣା ପଡ଼ୁଥାଏ । ଏତେଦିନ ସରକାରୀ ଚାକିରି କରି ସେ ଆଉ କାହାପାଖରେ ପ୍ରାଇଭେଟ ଚାକିରି କରିବ ? ତା' ଛଡ଼ା ପିଏ ଯାହା କହୁଥିଲେ ସେ ଯେ, ନିଜେ ନିଜର ମାଲିକ ଥିଲେ ଏବଂ ରାଜା ମହାରାଜା ଏପରିକି କଲେକ୍ଟରମାନଙ୍କ ଉପରେ ହାତ ଥିଲେ ଏକଥା ସେ ଭୁଲିବ କିପରି ? ଟଙ୍କା ପଇସା ଦେବା ଦିଅନ୍ତିଲେ ବି ପ୍ରାଇଭେଟ ଚାକିରିରେ ମାନ ସମ୍ମାନ ମର୍ଯ୍ୟାଦା କାହିଁ ? ଅବଶ୍ୟ ସେ ପାଞ୍ଚ ହଜାର ଟଙ୍କା ସଞ୍ଚୟ କରିଛନ୍ତି କିନ୍ତୁ ସେତିକିରେ କ'ଣ ଜୀବନଯାକ ଚଳିଦେବ ? ବେପାର ବଣିଜ ନ କଲେ ବଡ଼ ଘର ଖରଚ ଓ ଦରଦାମର ତେଜ ସମ୍ଭାଳିବ କିପରି ? ଦଣ୍ଡପାଟ ପୃଷ୍ଠି ଚାକିରି ପରେ ଯେ ହୁଏତ କହୁ କହୁ ମରିଥାନ୍ତା ବା ପେନ୍ସନ୍ ପାଇଥାନ୍ତା ତେବେ କେତେ କଲେକ୍ଟରେଟ୍‌ରେ ଶୋକସଭା ବା ବିଦାୟ ସଭା ତା' ପାଇଁ ହୋଇଥାନ୍ତା ଏବଂ କିଏ କେତେ ପ୍ରଶଂସା କରିଥାନ୍ତେ । ମାତ୍ର ତା' ହୋଇ ପାରିଲା ନାହିଁ । ଦୀର୍ଘ ନିଃଶ୍ୱାସଟାଏ ସେ ପକାଇଲେ ।

ଅନେକ ଲୋକର ଚଳେଇଣି ମଦ ହାଣ୍ଡିଆ ଖାଇ ଦୁଃଖ ମେଣ୍ଟାନ୍ତି । ଦଣ୍ଡପାଟ କିନ୍ତୁ କେବେ ନିଶା ପାଣିର ପାଖ ପଶି ନାହିଁ । ଭାତଖାଇ ସାରିବା ଥକା ମେଣ୍ଟାପାଇଁ କେବେ' କିମିନ୍ତି ବିଡିଟାଏ ବା ସିଗାରେଟ୍‌ଟାଏ ଟାଣିଥାଏ । ଅଜି ହଠାତ୍ କାହିଁକି କେଜାଣି ଭାବିଲା ସେଇ ମୁହୂର୍ତ୍ତରେ ଯଦି ସେ ବିଡି ବା ସିଗାରେଟ୍‌ଟିଏ ପାଆନ୍ତା ତେବେ ଟିକେ ଅଶୃପ୍ତି ବୋଧ କରନ୍ତା । ଦୋକାନଟାଏ ଖୋଜିଲା । କାହିଁ ନାହିଁ ! ଆଗପଛ କେଉଁପାଖେ ବି ପାଖରେ ଦୋକାନ ନାହିଁ, ସେହିଆଡେ ବୁଲିବ ଖାଲି ଅଫିସର ଅମଲଙ୍କ କ୍ୱାଟର ।

'ବଢିଆ କଥା !' ଦଣ୍ଡପାଟ ମନେ ମନେ ଭାବିଲା । ସେଇ ରାସ୍ତାରେ ସେ କେତେଥର ଯାଇଛି ଏ କଥା ତା' ନଜରକୁ ଆସିନାହିଁ । ଦଣ୍ଡେ ଛିଡାହୋଇ ପୁଣି ଆଗପଛ ଚାହିଁ ଭାବିଲା, ମୋ' ପରିଚିତ ଅନେକ ଲୋକ ଏଇଠି ଏଇ ଜାଗାରେ ପାନ ବିଡି ବା ସିଗାରେଟ୍ ଖୋଜୁଥିବେ । ଯଦି ଜଣେ ଦୋକାନଟାଏ ଏଠି ଖୋଲି ବସିଯାନ୍ତା ତେବେ ଅନେକ ଟଙ୍କା କରନ୍ତା ।

'ଏଇତ ବୁଦ୍ଧି ମିଳିଗଲା ।'—ଚମକି ଉଠିଲା ସେ । କି ବଢିଆ କଥା ! ସେତେବେଳେ ତୁମେ ଆଦୌ ଭାବି ନ ଥିବ ମୁଣ୍ଡକୁ ହଠାତ୍ ବୁଦ୍ଧିଟାଏ ଆସିଯିବ ।

ଦଣ୍ଡପାଟ ଘରେ ପହଞ୍ଚି ବି' ନଳକିଆ ଟାଣିଲାବେଳେ ସ୍ତ୍ରୀ ପଚାରିଲେ, 'ତୁମ ମନ ଆଜି ଭଲ ନାହିଁ ଭଳି ଜଣାପଡୁଛି ।'

'ମୁଁ କଥାଟାଏ ଭାବୁଛି'—ଦଣ୍ଡପାଟ କହିଲା ।

ସବୁ ଆଉ କଥାଟା ହେଲା ସେ । ଦେଇଦିନ ବସ୍ତା ରଡ଼ରେ ଅମ୍ବଗଛ ମୂଳରେ ବିଡ଼ିଟାଏ ବାନ୍ଧିଦେଲା । ତାଙ୍କ ଭିତରେ ଦୋକାନଟାଏ ଖୋଲିଦେଲା ଓ ମାପକ ଭିତରେ ସେତେବେଳେ ସେ ଉଭଳ ଲୋକର ଛୁଡ଼ିଦେଲା ସେବେଠାରୁ ଲୋକେ ତାକୁ ପାନ ଦୋକାନୀ ଓ ଖବରକାଗଜ ବିକାଳି ବୋଲି ଜାଣି ଗଲେଣି । ଦଣ୍ଡପାଟର ସ୍ତ୍ରୀ କିନ୍ତୁ କହନ୍ତି,

“ଜଳେଶ୍ୱରର ଅର୍ଦ୍ଧେକ ବୁଦ୍ଧିର ଗୁଡ଼ ଯାଦ ବଡ ଦୋକାନ ସାଜନ୍ତି, ତେର ତଳକୁ ଖସି ଆସିବ ।” ଦଣ୍ଡପାଣି ଉତ୍ତରରେ କହେ, ‘ଯୁଗ ବଦଳି ଗଲାଣି, କେବଳ ବୁଦ୍ଧିର ମେଳରଙ୍ଗ ମଣିଷ ଚଳେନା ଭଉଣୀ । ତା’ ଛଡ଼ା ଅଗରୁ ବୁଦ୍ଧିଆ ଯାହାଥିଲା ଆଜି କ’ଣ ତାହା ଅଛି ? ପୁଣି ଯାହାର ଯେତିକି ସେ ସେତିକି ନିଜ ପାଇବ, ବେଶୀ ଖୋଜିଲେ ଲାଭ କାହିଁ ?’

ଦଣ୍ଡପାଣିର ରୋଜଗାର ବଢ଼ି ଚାଲିଲା । ଦ୍ୱିତୀୟ ବର୍ଷ ଦୋକାନରେ ଡାଲି, ଲୁଣ, ତେଲ ରଖିଲା । ତୃତୀୟ ବର୍ଷକୁ ଆଉ ଗୋଟାଏ ଦୋକାନ ଘର ଜାଗା ଦେଖି ଖୋଲିଲା ଓ ବଡ଼ ଜ୍ୱାଇଁ ପୁଅକୁ ଆଣି ସେଇଠି ରଖିଲା । ପାଞ୍ଚ ବର୍ଷ ବେଳକୁ ବଜାରରେ ପାଞ୍ଚ ପାଞ୍ଚଟା ଦୋକାନ ଦଣ୍ଡପାଣିର । ଦଶ ବର୍ଷ ବେଳକୁ ମାଛ ବଜାର ଠାରୁ ଓ ଆମ୍ବ, ଅଙ୍ଗୁର, ପିଆଜ, ଲଙ୍କାର ପାଇକାରୀ ଦୋକାନ ‘ମହାଲକ୍ଷ୍ମୀ ଟ୍ରେଡ଼ିଂ’ ନାମରେ ବାସଷ୍ଟାଣ୍ଡ ସାମନାରେ ଛିଡ଼ା । ବଜାର ସାରା ଯେଉଁଠି ଶୁଣିବ ଦଣ୍ଡପାଣିର ନାଁ । ଦଣ୍ଡପାଣିର କାମ ହେଲା ସୋମବାରକୁ ସୋମବାର ଦୋକାନମାନଙ୍କ ପାଖରୁ ପଇସା ସଂଗ୍ରହ କରି ସିଧା ବେଙ୍କକୁ ଯିବା ଟଙ୍କା ଜମା ଦେବା ପାଇଁ

ଦିନେ ସକାଳେ ଅନେକ ଟଙ୍କା ଓ ବସ୍ତାଏ ନୋଟ୍ ନେଇ କାଉଣ୍ଟର ପାଖରେ ସେ ଛିଡ଼ା ହୋଇଛି, ଖାଜାଞ୍ଚି ବାବୁ କହିଲେ ଏଜେଣ୍ଟ ତାହା ସହିତ ଦେଖା କରିବାକୁ ଚାହୁଁଛନ୍ତି । ଜଣେ ଚପରାସି ଆସି ତାକୁ ଅଫିସ ଘରକୁ ନେଇଗଲା । ଏଜେଣ୍ଟ ତାକୁ ବସିବାକୁ କହିଲେ ନମସ୍କାର କରି ।

‘ଦଣ୍ଡପାଣି ବାବୁ, ବେଙ୍କରେ ଆପଣ ଯେଉଁ ଡିପୋଜିଟ୍ ରଖିଛନ୍ତି ମୁଁ ସେ ବିଷୟରେ ଆପଣଙ୍କୁ କିଛି କହିବାକୁ ଚାହେଁ । ଆପଣଙ୍କ କେତେ ଟଙ୍କା ବେଙ୍କରେ ଅଛି ଠିକ୍ କରି ଆପଣ କହି ପାରିବେ ?’

‘ନା, ସେଥି ହିସାବ ଏ ପାଖ କି ସେ ପାଖ ହୋଇପାରେ । ନ ହେଲେ ମୋଟା ମୋଟି ମୋର ଧାରଣା ଅଛି ।’

"ଅଳ ପାଦା ଜମାଦେଲେ ତାକୁ ଗୁଡ଼ ଅପ୍ଟିକ ବେଙ୍କରେ ସବମୋଟ ଗଚ୍ଛିତ ଟଙ୍କା ମାତ୍ର ହଜାର ଆଗ ଛଅ ନେଇଟି ପଇସା । ଏତେ ଟଙ୍କା ଅଜାଗରରେ ବେଭାଂଶ ଏକାକୀ ରହିଛନ୍ତି, କେଉଁ ସୁଖ ମିଳିବା ଭଳି ସେଥିର କଣ୍ଠ ନାହାନ୍ତି କାହିଁକି ?"

"ମୁଁ ଗଣ୍ଡଗୋଳିଆ ଭାବରକୁ ପଶିବାକୁ ଚାହୁଁନାହିଁ ସର । କେତେବେଳେ କେଉଁ କଥା । ବେଙ୍କ୍‌ରେ ମୋ ଟଙ୍କା ର ଦରକାର ନାହିଁ ।"

"ଆପଣ ଭୟ କରୁଛନ୍ତି କାହିଁକି ? ଆମ ପାଖରେ ଟଙ୍କା ବଢ଼ାଇବା ପାଇଁ ଭଲ ଅମାନତ ହିସାବ ବଡ଼ିଆ ଦେଶର ଧବୁ ରହିଛି । ଆମେ ଯେଉଁ ସୁଧ ପାଉଛନ୍ତି ତାଠୁଁ ଅନେକ ବେଶୀ ହାରରେ ସେଥିରୁ ଆପଣ ସୁଧ ପାଇବେ—।"

"ମୁଁ ତ କେବେହେଲେ ସେଥିର୍ ସେଥିର କଥା ଜାଣିନି, ବାବୁ ।"

"ଆପଣ ସେ କଥା ଗୁଡ଼ାକୁ ନାହିଁ । ଆମେ କାଗଜପତ୍ର ଠିକ୍ କରି ରଖିଥିବୁ । ଆପଣ ଆଜିଥରେ ଆସିଲେ ଖାଲି ଦସ୍ତଖତ କରି ଦେବେ ।"

"ତା କଣ ପାରିବ ଅବଶ୍ୟ କିନ୍ତୁ କାହିଁରେ ଦସ୍ତଖତ କରି ବାଣିଜ୍ୟ କରିବ ?" "କାହିଁକି ?"—ଏଜେଣ୍ଟ ହଠାତ୍ କହି ଉଠିଲେ, "ଅଣେ କ'ଣ ପଢ଼ି ଜାଣନ୍ତି ନାହିଁ ଯେ ଅସୁବିଧା ହବ ।"

ଛତଶ ହସଟିଏ ଦେଇ ଦଣ୍ଡପାଠ କହିଲେ, "ଏଜେଣ୍ଟ ବାବୁ, ମୁଁ ତ ଆପଣଙ୍କୁ ସେଇକଥା କହିବାକୁ ଯାଉଥିଲି । ମୁଁ କିଛି ପଢ଼ା ଲେଖା ଜାଣେନି । ଏ କଥା ଶୁଣି ଆପଣ ହୁଏତ ହସିବେ, କିନ୍ତୁ ଏହା ସତ୍ୟ । ମୁଁ ମୋଟେ ଲେଖା ପଢ଼ା ଜାଣେନି । କେବଳ କାଗଜରେ ଟିପଚିହ୍ନ ଦେଇପାରେ, ସେଇ ଦସ୍ତଖତ କରିବା ମଧ୍ୟ ଶିଖିନି ନେଇ ବେଳେ ବାଙ୍କରେ ପଶିଲ ପରେ ।"

ଏଜେଣ୍ଟ ଏତେ ଆଶ୍ଚର୍ଯ୍ୟ ହେଲେ ଯେ ଚେୟାରରୁ ଡେଇଁ ଉଠିଲେ । "ଏମିତି ଅଦ୍ଭୁତ କଥା ମୁଁ କେବେହେଲେ ଶୁଣି ନାହିଁ

ଫୋରମ୍ୟାନ୍ ପୁଣି କହିଲେ, "ଏକ୍ସକ୍ୟୁଜ ସାହେବ, କଥାଟା ହେଲା ଏଇ, ୧୨ ବର୍ଷର ସୁବଧାସୁଠେ ଗ ଚାକର ବେଳକୁ ମୁଁ ପ୍ରାୟ ବୁଢ଼ା ହୋଇ ଯାଇଥିଲି, ତା'ପରେ ଘଟଣା ଏମିତ ହେଲା ଯେ ମୁଁ କେଉଁଥିର ବହିଲ ଲେଖାପଢ଼ା ଶିଖିବ ନାହିଁ।"

ବେଙ୍କର ଫୋରମ୍ୟାନକୁ ଚାହିଁଲେ ଯିମିତି ସେ ପ୍ରାଚୀନ ଐତିହାସିକ ଯୁଗର ଗୋଟାଏ ଜାନୁଆରକୁ ଦେଖୁଛନ୍ତି।

"ଫୋରମ୍ୟାନ ବାବୁ, ଆପଣ କ'ଣ ମୋତେ କହିବାକୁ ଚାହାନ୍ତି, ଆପଣ କନା ଲେଖା ପଢ଼ା ରେ ଏତେ ବଡ଼ ବ୍ୟବସାୟ ଖୋଲିଛନ୍ତି ଏବଂ ଏତେ ଟଙ୍କା ରୋଜଗାର କରି ପାରୁଛନ୍ତି ? ଆଶ୍ଚର୍ଯ୍ୟ କଥା ! ଭଲକୁଲ ଲେଖାପଢ଼ା ନ ଜାଣିତ ଏମିତ, ଲେଖା ପଢ଼ି ଜାଣିଥିଲେ ଆପଣ ଯେ କ'ଣ ନ ହୋଇ ଥାନ୍ତେ ସେ କଥା କିଏ କହି ପାରିବ ?"

ସମ୍ଭ୍ରାନ୍ତ ମୁଖ ମଣ୍ଡଳରେ ଟିକଏ ହସ ଖେଳାଇ ଫୋରମ୍ୟାନ କହିଲେ, "ସେ କଥା ମୁଁ ଆପଣଙ୍କୁ ବେଶ୍ କହିଦେଇ ପାରିବ, ଆଜ୍ଞା ! ଲେଖି ପଢ଼ି ଜାଣିଥିଲେ ମୁଁ କେଲେବ୍ରେଟର 'ଅଡ'ଲ' ହୋଇ ରହିଥାନ୍ତି। *

---

* ସମରସେଟ୍ ମମ୍‌ଙ୍କର The 'Verger' ଗଳ୍ପର ଛାୟାରେ ଲିଖିତ।

# ଭଡ଼ାଟିଆ

"ସବା ଶେଷରେ ତେବେ ମିଳିଲା ? ତୋ ଚିଠି ପଢ଼ି ମୁଁ ମୋଟେ ବିଶ୍ବାସ କରିପାରିଲି ନାହିଁ ଯେ ଘରଟାଏ ମିଳିବ ।"

"ତା କିମିତି କରନ୍ତୁ । ମହାନ୍ତିଙ୍କ 'ଘର' ଗଳ୍ପଟା କ'ଣ ପଢ଼ି ନ ଥିଲୁ ?"

"ସେଇ ଶାର୍ଦ୍ଦୂଳବିକ୍ରୀଡ଼ିତ, ଅନୁଷ୍ଟୁପ୍, ମନ୍ଦାକ୍ରାନ୍ତାଙ୍କ କଥା ତ ? ଆଚ୍ଛା, ଘର କିମିତି ?"

"ତୋର ଭାଗ୍ୟ ଭଲ । ଘର ଏକଦମ ବଢ଼ିଆ । ଦୋତାଲା, ଉପରତାଲା ଆମର । ଖୋଲା ଜାଗା, ପ୍ରଚୁର କାଠଯୋଡ଼ି ହାଓ୍ବା, ଇଲେକ୍‌ଟ୍ରିକ୍ ଫାଏଡ, ସ୍କୁଲ୍ ସିନେମା, ଡାକ୍ତରଖାନା ସବୁ ପାଖରେ ।"

"ପାଣି ?"

"ଅଗଣାରେ କୂଅ । ଅସୁବିଧା ସେତିକି । କୂଅ, ବାଥ୍ ତଳେ ।"

"ତଳେ କିଏ ରହେ ?"

"ଖୋଦ୍ ଘରବାଲା ।"

"ଭଡ଼ା ?"

"ଦେଢ଼ଶ' । ଏଡ଼ଭାନ୍‌ସ ପଚିଶ ଟଙ୍କା ।"

"ଏତେ ଭଲ ଘରଟାଏ ଖାଲି ପଡ଼ିଥିଲା କିମିତି ?"

"ଘରର ସେତିକି ବଦ୍‌ନାମ । ସେଠି କେହି କେବେ ଧନ ଛପି ପାରନ୍ତି ନାହିଁ । ଅନେକ ସମୟରେ 'ମଚ୍ଛିରେ ମଚ୍ଛିରେ ସେଥିପାଇଁ ଘର ଖାଲିଥାଏ ।"

"ବୁଝିଲି । ଜୀବନର ଅଭିଜ୍ଞତାରୁ ମୁଁ ବୁଝିଛି ଯେ ଘର ଚଳାଇବା ଯେତେ କଷ୍ଟ ବୁଢ଼େଇଁ, ପର ଘରେ ରହିବା ତାଠୁଁ ବଳି କଷ୍ଟ । ପର ଘରକୁ ଆମେ ନିଜ ଘର ପରି ବ୍ୟବହାର କରୁ ନା, ପିଲାଟିଙ୍କୁ ଭଲ ପାଉ ନା । ଘରବାଲା ଶାଇଲକ୍ ହେଲେ ବି ମୋର କେବେ କୌଣସି ଘରବାଲାଙ୍କ ସଙ୍ଗେ ଝଗଡ଼ା ହୋଇ ନି । ଏ ବିଷୟରେ ମୋର ଦେଡ଼ଶୀଳ ନୀତି ।"

'ଦେଡ଼ଶୀଳ' ବୋଲି ଉଦ୍ଭଟ ଚମତ୍କାର ଶବ୍ଦ ଶୁଣି ବନ୍ଧୁଜନ ସାଇକେଲଟାକୁ ମହେଶବାବୁଙ୍କ ରିକ୍ସା ପାଖେ ପାଖେ ଚଳାଇଲେ । କଥାଗୁଡ଼ାକ ଯିମିତି ଭଲଭାବରେ ଶୁଣିପାରିବେ ।

ମହେଶବାବୁ ଅନର୍ଗଳ କହୁଥାନ୍ତି, "ପାରିବାରିକ କ୍ଷେତ୍ରରେ ଦେଡ଼ଶୀଳ, ଜାତୀୟ ସ୍ତରରେ ପଞ୍ଚଶୀଳ, ଆଫ୍ରୋ-ଏସୀୟ କ୍ଷେତ୍ରରେ ବାନ୍ଦୁଙ୍ଗର ଦଶଶୀଳ ।"

ବାଧା ଦେଇ ବନ୍ଧୁଜଣଙ୍କ ମନ୍ତବ୍ୟ କଲେ, "ତୋର ଏ ତତ୍ତ୍ୱ ରାଜନୀତି ବା ଜୀବନଦର୍ଶନ ମୋର ଅବୋଧ । ଅଧ୍ୟାପକ ହେଲେ କଣ ଏମିତି ବଙ୍କ ବଙ୍କ ହେବା, ଆଦର୍ଶ ନେଇ କଥାବାର୍ତ୍ତା କରିବା ଅଭ୍ୟାସରେ ହୋଇଯାଏ ? ଅଚ୍ଛା, ଦେଡ଼ଶୀଳଟା କ'ଣ ଟିକିଏ ବୁଝାଇ ଦେ ତ ।"

"ଖ୍ରୀଷ୍ଟର ଅଜଲ ନମ୍ବର ଗଜମାନ୍ତିଙ୍କର ମତ 'Love thy neighbour' ଅର୍ଥାତ୍ 'ପଡ଼ୋଶୀଙ୍କୁ ଭଲପାଅ' ମୋର ଦେଡ଼ଶୀଳର ପୂର୍ବ ଅର୍ଦ୍ଧ full ମତ । ମଣିଷକୁ ଜାନୁଆର ସ୍ତରରୁ ସାମାଜିକ ସ୍ତରକୁ ଆଣିଲା ଏଇ ମତଟି । 'ବସୁଧୈବ କୁଟୁମ୍ବକମ୍', 'ସର୍ବେ ସୁଖୀନୋ ଭବନ୍ତୁ' 'ମିତ୍ର କୁହନାହିଁ' ଇତ୍ୟାଦି ଉପଦେଶାବଳି ଏହି ଶୀଳଟିର ଜାଗତିକ ଅନୁଶୀଳନ ବୋଲି ଧରିଯାଇପାରେ । ଏଇ ମୋର ଏକଶୀଳ ବା ଅଧିକ—"

"ସେ ଅଧିକ ପରେ ଶୁଣିବ । ଆଗ ଘରେ ପଶିଯାଆ । ଏଇ ତ ସାମନା ମୋଡ଼ ଉପରେ ଘରଟା ।"

ଜନ୍ମୁ ନ ଶୁଣିଲା ପରି ମହେଶବାବୁ ବ୍ୟାଖ୍ୟା କରିବାକୁ ଲାଗିଲେ । "ଛୋଟ ଛୋଟ ପିଲାମାନଙ୍କୁ ଆମ ନିକଟକୁ ଆସିବାକୁ ଦିଅ ।" ଖ୍ରୀଷ୍ଟ ପିଲଙ୍କ ଉପରେ ଚିନ୍ତା । ମୋ ଦେବଶୀଳର ବାଣୀ ଅଧିକ ଏଇଟି । ଜନ ପିଲାଙ୍କୁ ସମସ୍ତେ ଭଲପାଆନ୍ତି; ତେଣୁ ପିଲାଟିକୁ ଶିକ୍ଷା କରିବା ଦୂରର କଥା, ଆନନ୍ଦ ସାଙ୍ଗ ଚୂଇଁ ଦଉନ୍ତୁ ନାହିଁ ।"

ଚକ୍‌ଧାଗ୍ରନ୍ତାଜ ଟ୍ରେନ୍‌ଟା ହେଲା । ଜନ୍ମଦିନ ଉପରକୁ ଉଠିଲା । ଅଧାପକ ମହେଶଚନ୍ଦ୍ର ମହାପାତ୍ର ନୂଆ କରି ପ୍ରବେଶ କଲେ ଜୀବନର ଉନ୍ମେଷ ଅଭିଯାନରେ ।

ବନ୍ଧୁ ବିଦାୟ ନେଲେ । କହିଲେ, "Good Luck to your ଦେବଶୀଳ ।"

ଉପର ମହଲରେ ନୂଆ ହୋଇ ସେଇଁ ଗଜ୍ୟାଟି ପ୍ରତିଷ୍ଠିତ ହେଲା, ତାହାର ସ୍ୱୀକୃତି ଓ ନିଜର ପରିଚୟପତ୍ର ନେଇ ପଡ଼ୋଶୀ ରାଜ୍ୟର ବହୁଦୂର ଘରେ ଅସିଲା ଗୋଟିଏ ଚିଠି । ତା'ର ପ୍ରେରକ ଶ୍ରୀ— ପରବାଲର ମୀନା । ନୂତନ ଦେଶର ଶାନ୍ତିଦୂତ ହେଲେ ମହେଶବାବୁଙ୍କ କନିଷ୍ଠ ପୁତ୍ର ମୁନୁ । ଦେବଶୀଳ ମତେ ପ୍ରସ୍ତୁତରେ ଏହା ଅନୁମାନ ।

ସକାଳ ହେଲେ କାଗଜ ଖାଲିଟି ଧରି ଏଣେତେଣେ ଚରକାମରଣ ସ୍ବର୍ଣ୍ଣ କୁଡି ଛିଣ୍ଡାଟି ଉପରେ ଚାଲିରେ ଦେଖିପାଏ । ତାଙ୍କର ଖେଳନା ସବୁ ଗୋଟି ଗୋଟି କରି ବାହାର କରି ମେଲାଇ ବସିଥାଏ । ମୁନୁ ତା' ମୁହଁକୁ ଦେଖେ ସ୍ବର୍ଣ୍ଣ ଖେଳନାଗୁଡ଼ିକୁ ନଜର କରେ ।

ପରବାଲର ମୀନା ଅନୁମାନ କରେ, "ମୋ ବଲ (ବ) ।"

ମହେଶବାବୁଙ୍କ ମୁନୁ ଏଇ 'ଅନ୍ଧ' ପ୍ରତିଯୋଗିତାରେ ଯୋଗ ଦେଇ ତା' ଖେଳନା ବାକ୍ସରୁ ମଧ୍ୟ ଗୋଟିଏ ଗୋଟିଏ ଜିନିଷ ବାହାର କରୁଥାଏ ଏବଂ ତାକେ ରଖୁଥାଏ ।

ମୀନା ପୁଣି କହେ, "ମୋ ଘର ।"

ମୁନୁ କହେ "ମୋ ମହଲ ।"

ପ୍ରତିଯୋଗିତା ବଢ଼ି ଚାଲେ । ମୀନା କହେ, "ମୋ ପ୍ରଜାପତି ।"

ମୁନୁ କହେ, "ମୋ ବଳ ।"

ମୀନା କହେ, "ମୋ ଅଜୁବାଇ ।"

ମୁନୁ କହେ, "ମୋ ଚୁନୁଘାଇ ।"

ଏଥର ମୀନା ହାତରୁ ଝେଙ୍କା ବାହାର କରି କହେ, "ମୋ ମାଆ ।" ମୁନୁର ମାଆ ନାହାଁ । ଦେଖେ ହାତରେ ସାହେବଟା ଅଛି । ତାରଗଳ ଗଳାରେ କୁହେ "ମୋ ବାପା ।"

ପ୍ରତିଯୋଗିତା ଶେଷ । ଦାରଙ୍କର ସମାନ । ଏଥର ଖେଳ ଆରମ୍ଭ ହୁଏ । ମୀନା ବାହାର କରେ କଣ୍ଢେଇ, କନା, ଖଟୁଲି, ଟିକି ଟିକି ବାକ୍ସଟି, ଢ଼ାରେଇ, ଖୋଷାଇ ସରଞ୍ଜାମ । ମୁନୁ ଯୋଡା ଝୋଳରୁ ବାହାର କରେ କାଚ ଅଟି, ଚକ୍ ଖଡ଼ି, ଦିଆସିଲି ବାକ୍ସ ।

କଣ୍ଢେଇଟିଏ ଧରି ମୀନା ପୁଣି ଆରମ୍ଭ କରେ, "ମୁଁ ବର (ଇ)" "ନା, ନା, ତୁ କନିଆ"—କହି ନ ପାରି ମୁନୁ କହେ "ମୁଁ ବର", ମୀନା କହେ, "ନା, ନା, ତୁ କନିଆଁ ହବୁ ।" ତାର କଥା ତାକୁ ଫେରାଇ ମୁନୁ କହେ, "ନା, ନା, ତୁ କନିଆଁ ହବୁ ।"

ବରକନିଆଁ ମେଳ ହୁଏ । ବାହାଘର ହୁଏ । ଶଙ୍ଖ ହୁଳହୁଳି ବାଜେ । କ୍ଷୀରିପିଠା ବି ହୁଏ । ଘାସ ମିଠା । ଜଳର ଟକ୍ ଟାକ୍ ଶବ୍ଦରୁ ଚା' ଜଣାପଡେ ।

ମହେଶବାବୁ ଖଟରେ ଶୋଇ ଦୁହିଁଙ୍କ ଖେଳ ଦେଖୁଥାନ୍ତି ଏବଂ ଅମୃତସ୍ୱାଦ ଅନୁଭବ କରୁଥାନ୍ତି । କାରଣ ଦେଢଶୀଳ ଘରର ଅଧା ଭାଗକୁ

ତାଙ୍କ ମନଲକ୍ଷି ଭାବ ଦେଉଛି । ବସ୍ତୁବାଦୀ ପର୍ଯ୍ୟାୟରେ ଯେଉଁ ସୌହାର୍ଦ୍ଦ ପ୍ରତିଷ୍ଠିତ ହେଲା, ବସ୍ତୁନାସ୍ତିକ ପର୍ଯ୍ୟାୟରେ ସହାବସ୍ଥାନ ପାଇଁ ଅବଶ୍ୟ ଅନୁକୂଳ ପରିବେଶ ଓ ବାତାବରଣ ସୃଷ୍ଟି କରିବ । ସ୍ୱାଭାବିକରେ ସ୍ୱବନ୍ଧୁ ଯେପରି ଘରବାଲାର ମୀନା ହଠାତ ତାଙ୍କ ମୁନୁର ମନର ଭାବ ହୋଇଯାଇଛି । ଘରବାଲୀ ତାଙ୍କର ସମ୍ପୂର୍ଣ୍ଣ ହେବ ।

ବାକ୍ସ ଭିତରୁ ଗ୍ଲାକ୍ସୋ ବିସ୍କୁଟ ପ୍ୟାକେଟ ବାହାର କରି ଟିକି ବୋହୂକୁ ଦେଇ ଯାଉନ୍ତି । ନୂଆବୋହୂ ଲାଜ କରେ, ମାନ କରେ, ମୁହଁ ଆଡ଼ କରିନିଏ । କିନ୍ତୁ ମୁନୁ ଯେତେବେଳେ କୁହେ, "ନେ, ଖା, ବାପା ଦେଉଛନ୍ତି" କୁନିଅାଁ ଟିକି ହାତ ପତେଇ ନିଏ । ବର ପାଖରେ କନିଅାଁର ଲାଜ କେତେ ସମୟ ରହେ କି ?

ଏତିକିବେଳେ ରାଜ୍ୟରକ୍ଷା ବିଭାଗର ଦାୟିତ୍ୱ ନେଇଥିବା ବୁଢ଼ା 'ଜେକ'ର ଗର୍ଜନ ପ୍ରଚଣ୍ଡ ଶୁଭେ । ନାଲିଅଖିରେ ଦେଖେ କେଉଁଠି କ'ଣ ଥିବା ଚକୁଳି ବି ପଡ଼ିଥିବ । ଚକୁଳି ଖଣ୍ଡି ପାଇଲେ ମୁନୁ ମୀନାର ମୁହଁରେ ଲାଗିଥିବା ଗୁଣ୍ଡକୁ ମଧ୍ୟ ଜିଭଟା ବାହାର କରି ଚାଟି ସଫା କରିଦିଏ ।

ଖୁବ୍ ମିଠା ଗଳାରେ ଘରବାଲୀ ଡାକୁଛନ୍ତି । "ମୀନା ଲୋ! ଦୁଧ ଖାଇବୁ ଆ ।" ତରବରରେ ଝୋଟନାପାକ ଗୋଡ଼ଟାଇ ଅଡ଼ବଡ଼ ହୋଇ ମୀନା ଉଠେ । ମୁନୁକୁ ଡାକେ, "ଆ, ଦୁହେଁ ଖାଇବା ।"

'ଜେକ୍' ପାଏ ଉପରଟାକୁ ହେଉ ଜଗିବାକୁ । ତଳକୁ ସେ ମୋଟେ ଯାଏନାହିଁ । ତେଣେ 'ଜଲି'ର ରାଜ୍ୟ, ସହାବସ୍ଥାନ ମନ୍ତ୍ର ସେମାନେ ବି ମାନି ଚଳନ୍ତି । ଘରବାଲା ଗର୍ବ କରେ ଦୁହିଁଙ୍କ ବୋଲକରା ଗୁଣ ଦେଖି । ସେ କହେ, ଦୁହିଁଙ୍କ ଦେହରେ ଅାଲ୍‌ସେସିଅନ୍ ରକ୍ତ ଅଛି । ମହେଶବାବୁ କିନ୍ତୁ କୁକୁରଙ୍କ ପେଡ଼ିଗ୍ରିଜ୍ ବା ବଂଶାନୁକ୍ରମିକ ଜାଣନ୍ତି ନାହିଁ । ତାଙ୍କ ଆଖିରେ ଦିଶେ ଠାକୁରବୁଲୁକୁଆ, ଖାଣ୍ଟି ଦେଶୀ, ହିନ୍ଦୁସ୍ତାନୀ କଥା ମିଛ । ଘରବାଲୀ ଜେକ୍‌କୁ ଭଲ ପାଏ । ତାଙ୍କୁ ବୋଧହୁଏ ସେ ଉପଦେଶ ଦେଉଛି, "ଦେଖ୍ ଜେକ୍, ଏହା ଦେବେ ଖାଇବୁ, ଯାହା ପାଇବୁ ନେଇବୁ, ଭିତରକୁ

ପାଇପାରିଲେ ବି ଭଲକଥା । କିନ୍ତୁ ଟେବୁଲକୁ ଆସିବୁ ନାହିଁ ଓ ଟେବୁଲକୁ 'ଆଉ ଚଢ଼ିବୁ ନାହିଁ ।"

ଟମେ 'ଜିମି' ବୋଲି ଯେଉଁ କୁକୁରଟା ଅଛି, ସେ ବି ଟେବୁଲ ଖାଏ । 'ଜିମି' ଘରବାଲାଙ୍କର ପ୍ରିୟ । ତାର ଆଦେଶରେ ସେ ସାହେବଙ୍କର କୁକୁରଟା, ମଲା ଛେଳିର ଚମ, ଗୋରୁହାଡ଼ ଘରକୁ ଆଣେ, ବାରଣ୍ଡାରେ କେତେବେଳେ ବା ବେଡ଼ରୁମରେ ବସି ସେ ସବୁ ଖାଏ । ସେଥିରେ ଘର 'ମାନ' ଯାଏନାହିଁ । ଘରବାଲା ଜିମିକୁ ଯେମିତି କହୁଛି, "ଦେଖ ଜିମି ! ଉପରବାଲା ଟଳ ଗାଧୁଆ ଘରେ ସାବୁନ, ତେଲ, ତଉଲିଆ ଗୁଡ଼ାଏ ରହିବ, ତୁ ସେ ସବୁ ଛୁଇଁବୁ ନାହିଁ, ନ ହେଲେ ସେମାନେ ଆମକୁ ଘୃଣ୍ୟ ବୋଲି ଭାବିବେ ଟି ।"

ଜେଜେ ଓ ଜିମିର ପୃଥକ୍ ଦାୟିତ୍ୱ ଥିଲେ ମଧ୍ୟ ଘଟଣାକ୍ରମେ ରକ୍ଷାବାଳ ରୂପରେ ଯେତେବେଳେ ବହିଃଶତ୍ରୁ ସୀମାନ୍ତରେ ଦେଖା ଦିଅନ୍ତି, ସେତେବେଳେ ସେମାନଙ୍କୁ ତଡ଼ାଇବା କରିବାକୁ ମିଳିତ କର୍ତ୍ତବ୍ୟ ବୋଲି ଧରି ନିଅନ୍ତି । ଘରବାଲା ଅକ୍ଲେଶରେ ହୃଦ୍‌ପୀଡ଼ାରୁ ଅବ୍ୟାହତି ପାଏ ।

ଟମେ ଶେଯ ଓଦା ହେଉଛି । ମୀନା ଚୋଟିଏ ହାତ ପାତିଲେ ଘରବାଲା କୁହନ୍ତି, "ଅଞ୍ଜୁଳି କର" । ମୀନାର ଅଞ୍ଜଳି ଭରିଯାଏ ଚକଲି, ରସଗୋଲା, ନଡ଼ିଆ ଗଜାରେ । ଟମେ ଯାହା ପାଉ ତାହା ଜିମିର ଖାଦ୍ୟ । ମୀନୁ ବି ଓଳିମରେ ହାତ ପାତେ । ଚଟୁଳାଏ ପିଜୁଳି ଆଉ କେତୋଟି ଜାମୁଡ଼ା ଝଡ଼ି ତା' ହାତରେ ପଡ଼େ । ଏକାଥରେ ସବୁ ଶେଷ । ଜିମି ଝପଟ ଗୁଣ୍ଡି ରହେ । ମୀନୁ ପୁଣି ହାତ ପାତେ । ଘରବାଲା ପରିହାସରେ କହେ, "ବାପୁ ବାପୁ ! ମା' ନ ଥିଲେ ପିଲଗୁଡ଼ାକ ଏମିତି ହାଭିଳାଷ ମାଗିଖିଆ ହୋଇଯାନ୍ତି ।"

ଜଣେ ବୃଦ୍ଧିରୁ ଘରବନ୍ଧ ଉପରବାଲାଙ୍କର ପିଲାଝିଲାଙ୍କୁ ସ୍ନେହଯୋଗ୍ୟ ଦେଖାଏ ନାହିଁ । ସେମାନେ ଖେଳିବେ, ରହିବେ; ଆଉ ଅଛନ୍ତି

